ମେଲଡୀ ସାଦର କରୁଛି **ସିଣ୍ଡ୍ରେଲା**

**ଆଉ ପରୀ ରାଣୀ**

ତମେ ଭାରି ଭଲ
ଗୋ ପରୀ ରାଣୀ,
ମେଲଡୀ ଟଫୀ ଆଣିଛ
ମୋ ମନ ଜାଣି।

ସାନଟିଏ, ସୁନାଟିଏ, ତୁ ଭଲ ଝିଅ
ମେଲଡୀ ଟଫୀ ଖାଅ, ତୁ ମୋଆର ପ୍ରିୟ!
ସାଇତି ରଖ ତୁ ସବୁ ରାପର
ଦଶଟି ବଦଳେ ମିଳେ ମାଗଣା ଷ୍ଟିକର!




**ତମ ଅତି ଆପଣାର ଡିସ୍‌ନେ ସାଥୀମାନଙ୍କ ମାଗଣା ଷ୍ଟିକର!**

ପିଲମାନେ! ତମ ଅତି ଆପଣାର ଡିସ୍‌ନେ ସାଥୀମାନଙ୍କୁ ଏବେ ଏକାଠି କର। ସେମାନେ ସମୁଦାୟ ୩୦ ଜଣ। ପ୍ରତିଟି ଷ୍ଟିକର ପାଇବା ପାଇଁ ତମେ ମେଲଡୀ ଟଫୀ'ର କେବଳ ୧୦ଟି ରାପର୍ ଓ ତା' ସାଥିରେ ୫୫ ପଇସା'ର ଟିକଟ ଲଗା ଲଫାଫାରେ ତମ ନାଁ-ଠିକଣା ଲେଖି ପଠାଅ:

ମେଲଡୀ ଟଫୀ, ପାର୍ଲେ ପ୍ରଡକ୍ଟସ ପ୍ରା. ଲି.
ନର୍ମିନ ହାଉସ, ୨୫୪-ବି, ଡକ୍ଟର ଆନୀ ବେସାନ୍ତ ରୋଡ,
ବମ୍ବେ-୪୦୦ ୦୨୫।

ପାର୍ଲେ

# ମେଲଡୀ ଟଫୀ

**କାରାମେଲ୍ ଓ ଚକୋଲେଟ'ର ସରସ ମିଳନ**
**ଗ୍ଲୁକ୍...ଗ୍ଲୁକ୍ ଖାଇବାକୁ ମନ ଛନଛନ।**

ପ୍ରବେଶିକା ମୂଲ୍ୟ ବିହୀନ




# ଚନ୍ଦ୍ରମାମୁଁ କ୍ୟାମେଲ
## ରଙ୍ଗ ପ୍ରତିଯୋଗୀତା

**ପୁରସ୍କାର ଜିତନ୍ତୁ**
**କ୍ୟାମେଲ**

ପ୍ରଥମ ପୁରସ୍କାର ଟ. ୧୫/-
୩ ଦ୍ୱିତୀୟ ପୁରସ୍କାର ଟ. ୧୦/-
୧୦ ତୃତୀୟ ପୁରସ୍କାର ଟ. ୫/-
୧୦ ସାର୍ଟିଫିକେଟ

ଏହି ପ୍ରତିଯୋଗିତାରେ ୧୨ ବର୍ଷ ପର୍ଯ୍ୟନ୍ତ ବୟସର ପିଲାମାନେ ଭାଗନେଇ ପାରିବେ । କ୍ୟାମେଲ ରଙ୍ଗ ଦ୍ୱାରା ଉପରେ ଦର୍ଶାଯାଇଥିବା ଚିତ୍ରଟିକୁ ସଂପୂର୍ଣ୍ଣରୂପେ ରଙ୍ଗ କରନ୍ତୁ ଓ ନିମ୍ନରେ ଦିଆଯାଇଥିବା ଠିକଣାକୁ ପଠେଇ ଦିଅନ୍ତୁ–ପୋ.ବକ୍ସ ନ.୧୧୫୦୧,ନରୀମ୍ୟାନ ପଏଣ୍ଟ ପୋଷ୍ଟ ଅଫିସ, ବମ୍ବେ୪୦୦ ୦୨୧ ବିଚାରକମଣ୍ଡଳୀଙ୍କ ନିଷ୍ପତ୍ତି ଚୂଡାନ୍ତ ଓ ବାଧ୍ୟତାମୂଳକ ହେବ । ଏ ସଂପର୍କରେ କୌଣସି ଚିଠିପତ୍ରକୁ ପ୍ରଶ୍ରୟ ଦିଆଯିବ ନାହିଁ । ଅନୁଗ୍ରହ କରି କୁପନକୁ କେବଳ ଇଂରାଜୀରେ ପୂରଣ କରନ୍ତୁ ।

Name: .................................................. Age: ..............................

Address: ..................................................................................

..........................................................................................

**CONTEST NO.35**

ପୂର୍ବରୁ ପଠାନ୍ତୁ : 31-3-1984

ଆପଣଙ୍କ କେଶ
ଆବଶ୍ୟକ କରେ

# ରୀତାର ଯତ୍ନ

ରୀତା ଏକ ଉତ୍କୃଷ୍ଟ କେଶ ପ୍ରସାଧନ ସାମଗ୍ରୀ ଅତ୍ୟଧିକ ମାତ୍ରାର ନିର୍ଯ୍ୟାସରେ ପ୍ରସ୍ତୁତ ଓ ମନମତାଣିଆ ସୁଗନ୍ଧଯୁକ୍ତ । ଏହା ବଳାସମସ୍ୱୀ ପ୍ରାକୃତିକ କେଶ ବଢ଼ାଇବା ଓ ମସ୍ତିଷ୍କ ଥଣ୍ଡା କରିବା ନିଶ୍ଚିତ । ରୀତା ପୁରୁଷ ଓ ମହିଳା ଉଭୟଙ୍କ ପାଇଁ ଏକ ଆଦର୍ଶ ପ୍ରସାଧନ ଦ୍ରବ୍ୟ ।







ରୀତା ମନୋହର କେଶ ବଢ଼ାଏ
ଆଜି ଏକ ବୋତଲ କିଣନ୍ତୁ
ସବୁଠାରେ କିଣିବାକୁ ମିଳୁଛି

ଭେଟୋ କୋ:, ବମ୍ବେ * କଲିକତା * ମାଡ୍ରାଜ

# ଜହ୍ନମାମୁଁ

ସଂସ୍ଥାପକ : 'ଚକ୍ରପାଣି'
ସଞ୍ଚାଳକ : ନାଗି ରେଡ୍‌ଡୀ

"ଆରବ୍ୟ ରଜନୀ" ର କେତୋଟି ବିଖ୍ୟାତ କାହାଣୀ (ଯଥା ସିନ୍ଦବାଦ୍, ଆଲିବାବା, ଆଲାଦ୍ଦିନ ଓ ଆଶ୍ଚର୍ଯ୍ୟ ପ୍ରଦୀପ)କୁ ଛାଡ଼ି ଦେଲେ ଅନ୍ୟାନ୍ୟ କାହାଣୀ ଅନେକଙ୍କୁ ଜଣା ନାହିଁ । କିନ୍ତୁ ମୂଳ ଆରବ୍ୟ ରଜନୀରେ ରହିଛି ଅନେକ ଚମତ୍କାର କାହାଣୀ ।

ସେହିପରି ଏକ କାହାଣୀ ଏ ସଂଖ୍ୟାରେ ପରିବେଷିତ ହୋଇଛି । ନାମ : "ଦୁଇ ଶେଠ" ।

## ଅମରବାଣୀ

ବସନ୍ତେ ଜ୍ଞାୟତେ ଭେଦଃ କାକସ୍ୟ ଚ ପିକସ୍ୟ ଚ ।
ସତଶ୍ଚା ବ୍ୟସତୋ ଭେଦଃ ସମୟେ ଏବ ଜ୍ଞାୟତେ ॥

[କାଉ ଏବଂ କୋଇଲି ଭିତରେ ଯାହା ପାର୍ଥକ୍ୟ, ବସନ୍ତ ଋତୁ ଆଗମନରେ ତାହା ସ୍ପଷ୍ଟ ହୋଇଯାଏ । ସେହିପରି ସଜ୍ଜନ ଓ ଦୁର୍ଜନ ଭିତରେ ଥିବା ପାର୍ଥକ୍ୟ ଜରୁରୀ କାଳରେ ଜଣା ପଡ଼ିଯାଏ ।]

ବର୍ଷ : ୧୭   ମାର୍ଚ୍ଚ ୧୯୮୪   ଅଙ୍କ : ୯

ପ୍ରତିସଂଖ୍ୟା : ଟ. ୨.୦୦ :: ବାର୍ଷିକ ମୂଲ୍ୟ : ଟ. ୨୪.୦୦



# ଜହ୍ନମାମୁଁ ସମ୍ବାଦ



## ଆଜ୍ଞାବହ ଜାହାଜ

ଜାପାନୀ ଜାହାଜଟିଏ । ନାମ 'ଶିନୋ କାଜା ମାରୁ' । ତାକୁ ଯେବେ କପ୍ତାନ କହିବେ "ଚାଲ !" ସେ ଗତି କରିବାକୁ ଆରମ୍ଭ କରିବ । "ରୁହ !" କହିଲେ ରହିଯିବ । ଏଥିରେ ପୃଥିବୀର ପ୍ରଥମ ଶବ୍ଦ-ଚାଳିତ ଇଂଜିନ୍ ଲାଗିଛି । କମ୍ପ୍ୟୁଟର ସାହାଯ୍ୟରେ ହୁକୁମ ଯାଇ ଇଂଜିନ୍‌କୁ ଚଲାଉଛି ବା ବନ୍ଦ କରୁଛି ।

## ସୌର ବିଜୁଳି

କାଲିଫର୍ଣ୍ଣିଆ (ଆମେରିକା)ରେ 'ସୋଲାରେନ୍' ନାମକ ଗବେଷଣାଗାର ତରଫରୁ କୁହାଯାଇଛି, ୧୯୮୮ ମସିହା ସୁଦ୍ଧା ପନ୍ଦର ହଜାର ବିଶାଳ ଦର୍ପଣ ସାହାଯ୍ୟରେ ସୂର୍ଯ୍ୟ ତେଜକୁ ଗୋଟିଏ ଲବଣହ୍ରଦ ଉପରେ ପ୍ରତିଫଳିତ କରି ସେଥିରୁ ପଚିଶ ହଜାର ଘର ଆଲୋକିତ ହୋଇ ପାରିଲା ଭଳି ବିଜୁଳି ଉତ୍ପନ୍ନ କରା ଯାଇ ପାରିବ ।





## ବିଶ୍ୱର ବୃହତ୍ତମ ଫୁଲହାର

ଜାମାଇକାରେ ବାସ କରୁଥିବା ଜଣେ ଭାରତୀୟ ଯୋଗୀ ଚିନ୍ମୟଙ୍କୁ ତାଙ୍କ ଅନୁରାଗୀମାନେ ସେ ଦଶହଜାର କବିତା ରଚନା ଶେଷ କରିଥିବା ହେତୁ ଦଶହଜାର ପୁଷ୍ପ ବିଶିଷ୍ଟ ହାରଟିଏ ଉପହାର ଦେଇଛନ୍ତି । ଏହା ପୃଥିବୀରେ ଏଯାଏଁ ପ୍ରସ୍ତୁତ ଫୁଲହାରମାନଙ୍କ ଭିତରେ ବୃହତ୍ତମ । ଚିନ୍ମୟ ପଣ୍ଡିଚେରୀସ୍ଥ ଶ୍ରୀ ଅରବିନ୍ଦ ଆଶ୍ରମର ଶିକ୍ଷାୟତନରେ ଛାତ୍ର ଥିଲେ ।

## ଜାଣନ୍ତି କି ?

୧. ପୃଥିବୀର ସବୁଠୁଁ ବଡ଼ ଭୂଗର୍ଭ ଗୁମ୍ଫା କେଉଁଠି ?

୨. ପୃଥିବୀର କେଉଁ ଅଞ୍ଚଳରେ ସବୁଠୁଁ ବଡ଼ ତୁଷାରଖଣ୍ଡମାନ ଦେଖାଯାଏ ?

୩. ପୃଥିବୀର ଉଚ୍ଚତମ ଜଳପ୍ରପାତ କେଉଁଠି ?

୪. ପୃଥିବୀର ବୃହତ୍ତମ ଆଗ୍ନେୟଗିରି କେଉଁଠି ?

୫. ଏସିଆର ବୃହତ୍ତମ କୃତ୍ରିମ ସରୋବର କେଉଁଠି ?

(୬୪ ପୃଷ୍ଠାରେ ଉତ୍ତର ଦେଖନ୍ତୁ)



# ଚମତ୍କାର ସମାଧାନ

ରାମଲାଲ ପିଲାବେଳଠୁଁ ମୋଟା ଥାଏ । ତେବେ ପଚିଶବର୍ଷ ବୟସ୍ ହେବା ବେଳକୁ ସେ ଏତେ ବେଶି ମୋଟା ହୋଇଯାଇଥାଏ ଯେ ତାକୁ ଦେଖି ତା' ଆଡ଼କୁ ନ ଅନାଇବେ, ଏମିତି ଲୋକ କେହି ନଥିଲେ । ଖାଲି ଅନେଇଲେ କଥା ନଥିଲା, ଅଧିକାଂଶ ଲୋକ ହସ ରୋକିପାରୁ ନଥାନ୍ତି ! ସେଥିରେ ଯେ ରାମଲାଲର ମନ ଖରାପ ହୋଇପାରେ, ସେ ବିଷୟରେ କେହି ଚିନ୍ତା କରୁ ନଥିଲେ । ରାମଲାଲ ମନେ ମନେ ସ୍ଥିର କଲା—ଯେମିତି ହେଲେ ମୋଟା କମେଇବାକୁ ହେବ । ନହେଲେ ଉପାୟ ନାହିଁ । ସେ ଯାଇ ଜଣେ ବୈଦ୍ୟ ପାଖରେ ପହଞ୍ଚି କହିଲା, "ଆଜ୍ଞା, ମୋଟା କମାଇବାର କିଛି ଉପାୟ ବତାଇଦେଇ ପାରିବେ?"

"ଦୈନିକ ଚାରି ପାଞ୍ଚମାଇଲ ଦୌଡ଼ିବାର ଅଭ୍ୟାସ କର । ବାଟରେ ରହି ରହି ଗଲେ ଚଳିବ ନାହିଁ । ଦୌଡ଼ିବୁ ତ ଦୌଡ଼ିବୁ । ଦୁଇ ତିନିମାସରେ ଅନେକ ଝଡ଼ିଯିବୁ, ସନ୍ଦେହ ନାହିଁ ।" ବୈଦ୍ୟ ପରାମର୍ଶ ଦେଲେ ।

ପରଦିନ ରାମଲାଲ ଦୌଡ଼ିଲା । ଲୋକେ ତ ସେ ଦୃଶ୍ୟ ଦେଖି ପାଟି କରି ହସିବାକୁ ଲାଗିଲେ । କେହି କେହି ପୁଣି ତା' ଆଗକୁ ଆସି ତା' ଦୌଡ଼ିବାରେ ବାଧା ଦେଇ ଥଟ୍ଟାଳିଆ ଭାବରେ ପଚାରିଲେ, "ଆହା ବାବୁ, ଥୟ ଧର, ଥୟ ଧର । କଥା କ'ଣ? ହେଲା କ'ଣ ଯେ ଏମିତି ଅତଙ୍କି ଦୌଡ଼ୁଛ?"

ରାମଲାଲ ସ୍ଥିର କଲା—ସେ ଖୁବ୍ ଭୋର ଉଠି ଦୌଡ଼ିବ । ସେତେବେଳେ ରାସ୍ତାରେ ଲୋକବାକ ନଥିବେ । ପରଦିନ ସେ ସେଇଆ କଲା । ଅନ୍ଧାରୁଆ ଅନ୍ଧାରୁଆ ଚାରିମାଇଲ ଦୌଡ଼ି ଲେଉଟି ଆସିଲା ।

"ବସୁନ୍ଧରା"



କିନ୍ତୁ ତହିଁ ପରଦିନ ଭୋର ନିଦ ଭାଙ୍ଗିଲା ନାହିଁ । ସେ ଦେଖିଲା, ସେଭଳି ବ୍ୟବସ୍ଥା ତା' ପ୍ରତି ଲାଗୁ ହୋଇ ପାରିବ ନାହିଁ । ସେ ପୁଣି ବୈଦ୍ୟଙ୍କୁ ଭେଟିଲା ଓ କହିଲା, "ଆଜ୍ଞା, ଦୌଡ଼ାଦୌଡ଼ି ମୋ ଦେଇ ହେବ ନାହିଁ । ମୋତେ ଅନ୍ୟ କୌଣସି ବାଟ ବତାନ୍ତୁ ।"

"ହେଲା, ବାପା ହେଲା । ଅନ୍ୟ ବାଟ ବତାଇ ଦେଉଛି । ତୁ ତୋ ଖାଇବା ପିଇବା ଅଭ୍ୟାସ ବଦଳା । ଦୈନିକ ଗିଲାସେ ଦୁଧ, ଗିଲାସେ ଫଳରସ ଓ ପୁରା ଲେମ୍ବୁ ଗୋଟାଏ ଛଡ଼ା ଅନ୍ୟ କିଛି ଯେମିତି ପେଟକୁ ନଯାଏ । ଯା, ଏଇଆ କର । ଏ ବିଧି ନିଶ୍ଚେ କାମ ଦେବ ।" ବୈଦ୍ୟ କହିଲେ ।

ରାମଲାଲ ଖୁସି ହୋଇଗଲା । ପରଦିନଠାରୁ ସେ ସେହି ବୈଦ୍ୟଙ୍କ ଉପଦେଶ ଅନୁସାରେ ଖିଆପିଆ ଆରମ୍ଭ କଲା । ଦୁଇଦିନ ଚାଲିଗଲା । ତୃତୀୟ ଦିନ ଆଉ ସମ୍ଭାଳି ପାରିଲା ନାହିଁ । ଦୁଇଦିନ ଭିତରେ ଯେତେ ସବୁ ପାଟି ସୁଆଦିଆ ଚିଜ ସେ ଖାଇବାରୁ ବିରତ ହୋଇଥିଲା, ସେ ସମସ୍ତ ପ୍ରକାର ଚିଜ ବରାଦ କରି ଭୁରି ଭୋଜନ ପକାଇଲା ।

ସନ୍ଧ୍ୟାବେଳକୁ ବୈଦ୍ୟଙ୍କୁ ଭେଟି ସେ କହିଲା, "ବୈଦ୍ୟରାଜ ! ମୋ ଦେଇ ଖାଇବା ପିଇବାରେ ସେଭଳି କଟକଣା ଖୁବ୍ ସୁବିଧା-ଜନକ ନୁହେଁ । ତେବେ କେତେଦିନ ସେଭଳି କଟକଣାରେ ଚାଲିଲେ ପତଳା ହେବି କହିଲେ ?"

"କେତେଦିନ ମାନେ ? ସାରା ଜୀବନ ସେମିତି କଟକଣା ମାନି ଚାଲିବାକୁ ହେବ । ନହେଲେ ପୁଣି ମୋଟା ହୋଇଯିବୁ । ତୋ ଦେହର ଗଠନ ସେମିତି । ବୁଝିଲୁ ?" ବୈଦ୍ୟ କହିଲେ ।

"ତେବେ ଛାଡ଼ନ୍ତୁ । ମୋତେ ଅନ୍ୟ କିଛି ବାଟ ବତାନ୍ତୁ । ଆଚ୍ଛା, ଔଷଧ କିଛି ନାହିଁ ?" ସେ ପଚାରିଲା ।

ବୈଦ୍ୟ ଟିକିଏ ଚିନ୍ତା କରି କହିଲେ, "ଅଛି । ତିଆରି କରିବାକୁ ହେବ ।" ପରଦିନ ରାମଲାଲକୁ ବୈଦ୍ୟ ଗୋଟାଏ ଡବା ଭର୍ତ୍ତି ବଟିକା ଦେଲେ । ଦିନେ ଛାଡ଼ ଦିନେ ସକାଳେ ସେଇଥିରୁ ଗୋଟାଏ ଖାଇବାକୁ କହିଲେ ।

ରାମଲାଲ ବଟିକା ଖାଇଲା। ଖାଇବା ମାତ୍ରେ ପେଟ, ଛାତି ଓ କଣ୍ଠନଳୀ ଯେମିତି ଜଳିବାକୁ ଲାଗିଲା! କୌଣସି ଖାଦ୍ୟରେ ତା'ର ରୁଚି ହେଲା ନାହିଁ। ସାରାଦିନ ସେହିପରି ବିତିଲା। ପରଦିନ ସେ ସ୍ୱାଭାବିକ ଭାବରେ ଖିଆପିଆ କଲା। ପୁଣି ତହିଁ ପରଦିନ ବଟିକା ଖାଇବା ଯୋଗୁଁ କିଛି ଖାଇପାରିଲା ନାହିଁ। ସେ ବୁଝିଲା, ବଟିକା ଜରିଆରେ ବୈଦ୍ୟ ତାକୁ ଦିନେ ଛାଡ଼ ଦିନେ ଉପବାସରେ ରଖି ପତଳା କରିବାର ଚେଷ୍ଟା କରିଛନ୍ତି। ତେବେ ବଟିକାରେ ଶକ୍ତି ବୃଦ୍ଧି କଲାଭଳି କିଛି ଗୁଣ ଥିଲା ବୋଲି ସେ ଦୁର୍ବଳ ଅନୁଭବ କଲା ନାହିଁ।



ଏହିପରି ଭାବରେ କେଇଦିନ ଗଲା। ଦିନେ ବର୍ଷା ଯୋଗୁଁ ତା' ଘରେ ଜଣେ ଅତିଥି ଆଶ୍ରୟ ନେଲେ। ଅତିଥି ସହରରେ ଜଣେ ବେପାରୀ। କିନ୍ତୁ ସେ ଅତ୍ୟନ୍ତ ରୋଡ଼ା।

ରାତିରେ ରାମଲାଲ ତାଙ୍କୁ ଭଲ ଭାବରେ ଖାଇବାକୁ ଦେଲା। କିନ୍ତୁ ସେଦିନ ତା'ର ଔଷଧ ଖାଇବା ଦିନ ହୋଇଥିବାରୁ ନିଜେ ଖାଇଲା ନାହିଁ।

"ଇଏ କ'ଣ? ତମେ ଖାଇବ ନାହିଁ କିଆଁ?" ଅତିଥି ପଚାରିଲେ।

"ଦେଖ ଭାଇ, ସେକଥା ପଚାରି ଆଉ ମୋତେ ଦୁଃଖ ଦିଅନା। ଖାଇପିଇ ଆରାମରେ ଶୋଇ ପଡ଼ିବ ଯାଅ।" ରାମଲାଲ କହିଲା।

କିନ୍ତୁ ଅତିଥି ସେଥିରେ ସନ୍ତୁଷ୍ଟ ହେବା ଲୋକ ନଥିଲେ। ସେ ରାମଲାଲକୁ କିଛିକ୍ଷଣ ଲକ୍ଷ୍ୟ କରି ପଚାରିଲେ, "ହଇହେ ବାବୁ, ତମେ ତମ ମୋଟ କମାଇବା ସକାଶେ ଚେଷ୍ଟା ଚରିତ କରୁଛ କି?"

ରାମଲାଲ ଟିକିଏ ଦ୍ୱିଧା କରି କହିଲା, "ହଁ, ତମେ ଠିକ୍ ଧରିଛ।"

"ତମେ ମୋଟା ହେବାକୁ କାହିଁକି ଡରୁଛ?" ଅତିଥି ଜେରା କଲେ।

"କହିଲି ପରା, ମୋତେ ଏତେ କଥା ପଚାରନା ବୋଲି? ବେଶ୍, ଯଦି ଜାଣିବାକୁ ଏତେ ଇଚ୍ଛା, କହୁଛି ଶୁଣ। ମୁଁ ମୋଟ କମାଇବା ପାଇଁ ଦୌଡ଼ାଦୌଡ଼ି କଲେ ଲୋକେ

ହସୁଛନ୍ତି । ମୋଟା ହେବା ଭଲ ନୁହେଁ । ଖାଦ୍ୟପେୟ କମ୍ କରିବା ଛଡ଼ା ମୋର ଅନ୍ୟ କୌଣସି ଉପାୟ ନାହିଁ । ବୁଝିଲ? ଏଥର ଖାଇ ପକାଅ । ମୋତେ ଅପେକ୍ଷା କରନାହିଁ ।" ରାମଲାଲ୍ କହିଲା ।

"ଓଃ ଲୋକେ ତମ ମୋଟା ଦେଖି ହସୁଛନ୍ତି ବୋଲି ତମେ ମୋଟା କମାଇବାକୁ ଚାହଁ ! ଆଚ୍ଛା, ମୋ ଉଚ୍ଚତା ଦେଖି ଲୋକେ ହସୁଥିବେ କି ନାହିଁ କହିଲ ?" ଅଚ୍ୟୁତ ପଚାରିଲେ ।

ରାମଲାଲ ଟିକିଏ ଦ୍ୱିଧା କରି କହିଲା, "ହଁ, ହସୁଥିବେ ।"

"ଆଚ୍ଛା, ସତ କଥା କୁହ । ତମେ ନିଜେ ମୋତେ ବଜାର ଭିତରେ ଦେଖିଥିଲେ ହସି ପକାନ୍ତ ନା ନାହିଁ ?" ଅଚ୍ୟୁତ ପଚାରିଲେ ।

"ହଁ । ହୁଏତ ହସି ପକାନ୍ତି ।" ରାମଲାଲ୍ କହିଲା ।

"ବେଶ୍ । ମୁଁ ବି ସତକଥା କହିବି । ତମକୁ ବଜାର ଭିତରେ ଦେଖିଲେ ମୁଁ ବି ହସି ପକାନ୍ତି । ବର୍ତ୍ତମାନ ଆମ ସମସ୍ୟାର ସମାଧାନ ମିଳିଗଲା ।" ଅଚ୍ୟୁତ କହିଲେ ।

"ସମସ୍ୟାର ସମାଧାନ କେମିତି ମିଳିଲା ?" ରାମଲାଲ୍ ଆଶ୍ଚର୍ଯ୍ୟ ହୋଇ ପଚାରିଲା ।

"ଦେଖ । ଯେତେବେଳେ ଲୋକେ ତମକୁ ଦେଖି ହସିବେ, ସେତେବେଳେ ତମେ କଳ୍ପନା କରିବ କି ତମେ ତମେ ନୁହଁ, ମୁଁ । ତେଣୁ ତମେ ବି ହସି ପାରିବ । ମୋତେ ଦେଖି ଯେତେବେଳେ ଲୋକେ ହସିବେ, ଏଣିକି ମୁଁ ଧରିବି କି ମୁଁ ମୁଁ ନୁହେଁ, ତମେ । ତେଣୁ ମୁଁ ବି ହସି ପାରିବି !" ଅଚ୍ୟୁତ ବୁଝାଇ ଦେଲେ ।

"ଇଏତ ବଡ଼ ମଜାର ସମାଧାନ !" ମନ୍ତବ୍ୟ ଦେଲା ରାମଲାଲ୍ ।

ଏହାପରେ ଦୁହେଁ ବହେ ହସିଲେ । ରାମଲାଲର ଅନୁରୋଧ ରକ୍ଷା କରି ଢେଙ୍ଗା ଅଚ୍ୟୁତ ଜଣକ ପରଦିନଟି ତା' ଘରେ ରହିଗଲେ । କାରଣ ସେଦିନ ଦୁହେଁ ଏକାଠି ଖିଆପିଆ କରି ପାରିଲେ !





[ ୯ ]

[ପଦ୍ମପାଦ ପିଙ୍ଗଳର ସହାୟତାରେ ମହାତାନ୍ତ୍ରିକ ମହାମାୟୀଙ୍କ ସମାଧି ଥିବା ମନ୍ଦର ଭିତରୁ ଯାଦୁଶକ୍ତି ସମ୍ପନ୍ନ ଜିନିଷମାନ ହସ୍ତଗତ କରିନେବା ଉତ୍ତାରୁ ସେଠାରେ ବହୁଦିନରୁ ଚୁପ୍‌ଚାପ୍ ରହିଥିବା ପିଶାଚମାନେ ଉଚ୍ଛୃଙ୍ଖଳ ହୋଇ ଉଠିଲେ। ପିଙ୍ଗଳ ଯାଇ ଭଲ୍ଲୁକକେତୁକୁ ମୁକ୍ତ କରି ଆଣି ସେମାନଙ୍କ ନେତା ବନାଇବାକୁ ଚାହିଁଲେ। ତା'ପରେ—]

ଭଲ୍ଲୁକକେତୁକୁ ଯେତେବେଳେ ସେ ପିଶାଚ ଦଳର ନେତା ରୂପେ ଅଭିଷିକ୍ତ କରିବାର ପ୍ରସ୍ତାବ ଦିଆଗଲା, ସେତେବେଳେ ସେ ଆତଙ୍କରେ ଶିହରି ଉଠି କହିଲା, "ମାଲିକ! ମୋର ଏ ପଦ ଜମା ଲୋଡା ନାହିଁ। ଦୟାକରି ମୋତେ ଆପଣମାନଙ୍କ ସାଙ୍ଗରେ ରଖନ୍ତୁ। ମୁଁ ଆପଣମାନଙ୍କ ସେବା କରୁଥିବି।"

"ଆରେ, ଇଏ କ'ଣ କହୁଛ ଭଲ୍ଲୁକ-କେତୁ? ତୁମ ବିନା ଏମାନଙ୍କୁ ସମ୍ଭାଳିବ କିଏ? ଏମାନଙ୍କର ତଥା ମଣିଷ ସମାଜର ହିତ ଦୃଷ୍ଟିରୁ ତମେ ଏମାନଙ୍କ ପାଖରେ ରହି ଏମାନଙ୍କୁ ଜବରଦରେ ରଖିବା ଆବଶ୍ୟକ।" ପଦ୍ମପାଦ କହିଲେ।

"ନା ଆଜ୍ଞା, ଏଭଳି କାମ ସକାଶେ ମୋର ମୋଟେ ଉତ୍ସାହ ନାହିଁ। ମୁଁ କରିବି କ'ଣ?"



ବାରମ୍ବାର ନେତୃତ୍ୱ ହୋଇ ଭଲ୍ଲୁକକେତୁ ଏଇ ଏକା କଥା କହିଲା ।

ସେତେବେଳକୁ ପିଶାଚମାନେ ଭଲ୍ଲୁକ-କେତୁକୁ ବେଢ଼ିଯାଇ ଚିତ୍କାର କରି କହୁଥାନ୍ତି, "ଜୟ ଭଲ୍ଲୁକକେତୁର ଜୟ ! ହୁମ୍ ହୁମ୍ !"

ପିଙ୍ଗଳ କହିଲା, "ପଦ୍ମପାଦ ! ମୋର ଗୋଟିଏ ପ୍ରସ୍ତାବ ଅଛି । ସବୁ ସମସ୍ୟାର ସମାଧାନ ହୋଇଯିବ ।"

"ସତେ ? କ'ଣ ସେ ପ୍ରସ୍ତାବ ?" ପଦ୍ମପାଦ ଉତ୍ସୁକ ହୋଇ ପଚାରିଲେ ।

"ଭଲ୍ଲୁକକେତୁ ଏମାନଙ୍କ ନେତା ନ ହୋଇ ଆମ ସେବକ ହୋଇ ରହିବାକୁ ମନ ବଳାଉଛି । ପୁଣି ଏ ଦଳରେ ଦକ୍ଷ ନେତାର କର୍ତ୍ତୃତ୍ୱରେ ନ ରହିଲେ ଏ ପିଶାଚଦଳ ଉଚ୍ଛୃଙ୍ଖଳ ହୋଇ ଜନପଦ ଭିତରକୁ ଯାଇ ଭୀଷଣ ଉତ୍ପାତ କରିବାର ଆଶଙ୍କା ରହିଛି । ମୋର ପ୍ରସ୍ତାବ ହେଲା, ମହାମାୟାଙ୍କ ତରବାରି ପ୍ରୟୋଗ କରି ଏମାନଙ୍କୁ ସମୂଳେ ବିନାଶ କରାଯାଉ । ତା'ହେଲେ କଥା ଛିଡ଼ିଲା !"

ପିଙ୍ଗଳ ଟିକିଏ ଉଚ୍ଚ କଣ୍ଠରେ ଏ ପ୍ରସ୍ତାବ ଦେଲେ ।

ତାଙ୍କ ପ୍ରସ୍ତାବ ଶୁଣି ପଳାଇଥିବା ପିଶାଚମାନେ ଚିତ୍କାର କରି କହିଲେ, "ନା, ନା । ଆମମାନଙ୍କୁ ବିନାଶ କରନ୍ତୁ ନାହିଁ । ଯଦି ଭଲ୍ଲୁକକେତୁ ଆମ ନେତା ହେବାକୁ ଅନିଚ୍ଛୁକ, ତେବେ ଆମେ ଆମ ନିଜ ନିଜ ଭିତରୁ ଆଉ ଜଣେ ନେତା ବାଛିବୁଁ ।"

"ବେଶ ଭଲ କଥା । ସେଇଆ କର । ଗୋଟାଏ କଥା । ଯଦି ତମେମାନେ ଏ ଭଲ୍ଲୁକ ପ୍ରଦେଶ ଭିତରେ ପଶି ଉତ୍ପାତ କରିବାର ସମ୍ବାଦ ପାଇବୁଁ, ତେବେ ଭଲ କଥା ହେବ ନାହିଁ । ବର୍ତ୍ତମାନ ନେତା ବାଛ । ଆମେ ତା' ଉପରେ କ୍ଷମତା ଛାଡ଼ି ଏଠାରୁ ଚାଲିଯିବୁଁ ।" ପଦ୍ମପାଦ କହିଲେ ।

"ଆଜ୍ଞା, ଚିନ୍ତା କରନ୍ତୁ ନାହିଁ । ଆପଣମାନେ ଯେପରି ଆପଣମାନଙ୍କ ଭିତରେ ଯାହାର ଯୋଗ୍ୟତା ଅଛି ତାକୁ ନେତା ବାଛନ୍ତି, ଆମେ ସେହିପରି ଆମ ଭିତରେ ଯିଏ ସବୁଠାରୁ ଯୋଗ୍ୟ ତାକୁ ବାଛି ବାହାର

କରିବୁଁ । ଭଲ୍ଲୁକ ପ୍ରଦେଶ ଭିତରକୁ ଯାଇ ଅନ୍ୟମାନଙ୍କ ଉପରେ ଉପଦ୍ରବ କରିବାର ପ୍ରଶ୍ନ ଉଠିବ ନାହିଁ ।" ଏହା କହି ପିଶାଚମାନେ ନେତା ନିର୍ବାଚନରେ ମନ ଦେଲେ ।

ଗୃହ୍ମଁ ଗୃହ୍ମଁ ଅତି ଲୋମହର୍ଷକ ଘଟଣାମାନ ଘଟିବାକୁ ଲାଗିଲା । ସମସ୍ତେ ପରସ୍ପର ଲଢ଼େଇରେ ଲାଗିଗଲେ । ଯିଏ ସବୁଠାରୁ ବଳବାନ ଓ ଦୁର୍ଦ୍ଧର୍ଷ ହୋଇଥିବ, ସେ ଯିନା ପିଶାଚ ସମାଜର ନେତା ହୋଇ ପାରିବ ! ବଳ ଓ ନିଷ୍ଠୁରତା ପ୍ରମାଣ କରିବା ନିମନ୍ତେ ପ୍ରତ୍ୟେକେ ବ୍ୟଗ୍ର ହେବାର ଦେଖାଗଲା । ଭୀଷଣ ଚିତ୍କାର ଓ ମଲ୍ଲଯୁଦ୍ଧର ଆବାଜରେ ମେଦିନୀ କମ୍ପିବାକୁ ଲାଗିଲା । ପୁଣି ସେମାନଙ୍କ ଭିତରେ କିଏ କେତେ ପ୍ରକାର ଯାଦୁବିଦ୍ୟା ଜାଣେ, ସେ ବିଷୟରେ ମଧ୍ୟ ପ୍ରତିଯୋଗିତା ଲାଗିଗଲା । ଜଣେ ବାଘ ରୂପ ଧରି ଆଉ ଜଣକୁ ଆକ୍ରମଣ କରିବା ବେଳକୁ କେହି ଜଣେ ଭୃତୀୟ ପିଶାଚ ହାତୀ ହୋଇ ବାଘକୁ ଦଳି ଦେଲା । କେହି ଜଣେ ଚତୁର୍ଥ ପିଶାଚ ସେଇଠୁ ସିଂହ ବନିଯାଇ ହାତୀ ଉପରକୁ କୁଦିପଡ଼ି ତାକୁ ରକ୍ତାକ୍ତ କଲା ।



ସେ ଅଞ୍ଚଳର ମାଟି ରକ୍ତମୟ ହୋଇଗଲା । ଅନେକ ସମୟ ଧରି ଏହିପରି ବିଭତ୍ସ ଲଢ଼େଇ ଚାଲିବା ଫଳରେ ଅଧିକାଂଶ ପିଶାଚ ଖତମ ହୋଇଗଲେ । ଯେଉଁ କେତେଜଣ ବଞ୍ଚି ରହିଲେ, ସେମାନଙ୍କ ଭିତରୁ ଯିଏ ସବୁଠାରୁ ବଳବାନ ଓ କୌଶଳୀ ବୋଲି ଜଣା ପଡ଼ିଲା, ତାକୁ ମହାପିଶାଚ ଉପାଧି ଦିଆଗଲା ଓ ନେତୃତ୍ୱରେ ବରଣ କରାଗଲା । ସେ ହେଲା ପିଶାଚ ରାଜା ।

କୌଣସି ମତେ ସେ ସମସ୍ୟାର ସମାଧାନ ହୋଇଯିବାରୁ ପଦ୍ମପାଦ ସନ୍ତୁଷ୍ଟ ହେଲେ । ସେ ପିଶାଚ ରାଜା ପ୍ରତି ଶୁଭେଚ୍ଛା ଜଣାଇ ପିଶାଚମାନଙ୍କୁ ଉଦ୍ଦେଶ୍ୟ କରି କହିଲେ, "ଏଥର ତମେମାନେ ସ୍ୱେଚ୍ଛାରେ ଓ ସ୍ୱାଧୀନ ଭାବରେ ଭଲ୍ଲୁକ ପ୍ରଦେଶ ଭିତରେ ବୁଲିବୁଲି କରି ପାରି । ଯେ ପର୍ଯ୍ୟନ୍ତ ତମେମାନେ ମଣିଷମାନଙ୍କର ହାନି ନ କରିଛ, ସେ ପର୍ଯ୍ୟନ୍ତ ଆମେ ତମ ସ୍ୱାଧୀନତା ଉପରେ ହସ୍ତକ୍ଷେପ

କରିବୁଁ ନାହିଁ । ବରଂ ତମକୁ ସାହାଯ୍ୟ କରିବୁଁ ।"

ଏହାପରେ ସେ ପିଶାଚ ରାଜାଙ୍କୁ କହିଲେ, "କେବେ କୌଣସି ବିପଦ ଆପଦ ଆସିଲେ ଆମକୁ ସ୍ମରଣ କରିବ । ଆମେ ଆସି ତମକୁ ତମ ଶତ୍ରୁ କବଳରୁ ରକ୍ଷା କରିବୁଁ ।"

ପିଶାଚମାନେ ହର୍ଷଧ୍ୱନି କରି ନିଜ ନୂଆ ନେତାଙ୍କୁ ଆନନ୍ଦରେ ଟେକି ନେଇ ପାହାଡ଼ିଆ ଅଞ୍ଚଳ ଭିତରକୁ ଚାଲିଗଲେ ।

ପଦ୍ମପାଦ କିଛି ସମୟ ସେମାନଙ୍କ ଆଡ଼େ ଅନାଇ ରହି ତା'ପରେ କହିଲେ, "ପିଙ୍ଗଳ, ମୋର ବିଶ୍ୱାସ ଦୃଢ଼ତା, ଆତ୍ମବିଶ୍ୱାସ ଓ ସାହସ ଦ୍ୱାରା ମଣିଷ ଅନେକ ଅସାଧ୍ୟ ସାଧନ କରିପାରେ । ଅବଶ୍ୟ ଏସବୁ ଗୁଣ ସାଙ୍ଗକୁ ବୁଦ୍ଧି ଥିବା ଆବଶ୍ୟକ । ନହେଲେ କେତେବେଳେ କ'ଣ ବିଗିଡ଼ିଯିବ ପୁଣି । ତୁମଠାରୁ ଯେପରି ସାହାଯ୍ୟ ପାଇଲି, ତାହା ଜୀବନରେ ଭୁଲିବାର ନୁହେଁ । ମୋର ଇଚ୍ଛା, ଘରକୁ ଫେରିଯିବା ପୂର୍ବରୁ କିଛିଦିନ ମୋ ସାଥିରେ ରୁହ ।"

ପିଙ୍ଗଳ ଏ ପ୍ରସ୍ତାବରେ ନିଜର ମୌନ ସ୍ୱୀକୃତି ଦେଲେ ।

ପଦ୍ମପାଦ ଟିକିଏ ମାଟି ଉଠାଇ ନେଇ କୌଣସି ମନ୍ତ୍ର ପଢ଼ି ତାହା ଉପରେ ଫୁଙ୍କି ଦେଇ ତାକୁ ପୁଣି ତଳେ ପକାଇ ଦେବା ମାତ୍ରେ ମାଟି ତଳୁ ପିଶାଚ ଗଧ ବାହାରି ପଡ଼ି ଗୋଟାଏ ବିକଟ ରଡ଼ି ଛାଡ଼ି ତାଙ୍କ ଆଗରେ ଠିଆ ହୋଇଗଲା ।



"ହଜୁର, ଆପଣଙ୍କ ସେବା ପାଇଁ ମୁଁ ଥାଉଁ ଥାଉଁ ଆପଣ ଏ ଗଧରେ କାହିଁକି ସବାର ହେବେ ?" ଭଲ୍ଲୁକକେତୁ କହିଲା । ସେଉଠୁ ପଦ୍ମପାଦ ଭଲ୍ଲୁକକେତୁ ଉପରେ ବସିଲେ ଓ ପିଙ୍ଗଳ ଗଧ ଉପରେ ବସିଲା । ଭଲ୍ଲୁକକେତୁ ଓ ପିଶାଚଗଧ ଗୃହୁଁ ଗୃହୁଁ ଆକାଶ ବକ୍ଷକୁ ଉଠିଯାଇ ତୀବ୍ର ଗତିରେ ଉଡ଼ି ଚାଲିଲେ । ପଦ୍ମପାଦଙ୍କ ନିର୍ଦ୍ଦେଶ ଅନୁସାରେ ଭଲ୍ଲୁକକେତୁ ଅଗ୍ରଭାଗରେ ରହି ଉଡୁଥାଏ ।

କିଛି ସମୟ ପରେ ଭଲ୍ଲୁକକେତୁ କ୍ରମେ ତଳକୁ ତଳକୁ ଆସିଲା । ତାକୁ ଅନୁସରଣ କରି ପିଶାଚଗଧ ମଧ୍ୟ ତଳମୁହାଁ ହେଲା । ତଳେ ଗୋଟିଏ ସୁନ୍ଦର ନଗରୀ ଦେଖାଗଲା । ନଗରୀ ପାରହେବା ପରେ ଗୋଟିଏ ପର୍ବତ ଏବଂ ପର୍ବତର ପାଦଦେଶରେ ସୁନ୍ଦର କୋଠାଟିଏ ଦେଖାଗଲା ।

"ପିଙ୍ଗଳ ! ଏଇ ଯେଉଁ ଘର ଦେଖୁଛ, ତାହା ମୋର ପିତାଙ୍କ ଦ୍ୱାରା ନିର୍ମିତ । ମୋର ଦୁଇ ଭାଇ କିପରି ସେ ଯାଦୁ ସରୋବରରେ ବନ୍ଦୀ ପଡ଼ିଲେ, ସେକଥା ତମେ ଜାଣ । ବର୍ତ୍ତମାନ ଅବଶ୍ୟ ତୁମ ସାହାଯ୍ୟରେ ମୁଁ ତାନ୍ତ୍ରିକ ମହାମାୟୀଙ୍କର ଅମୂଲ୍ୟ ରତ୍ନମାନ ହସ୍ତଗତ କରି ପାରିଛି । ମୋ ପିତାଙ୍କର ଏ ମହଲ ସାଙ୍ଗକୁ ସେ ରଖିଯାଇଥିବା ତନ୍ତ୍ରଗ୍ରନ୍ଥ ମଧ୍ୟ ମୋର ଅଧିକାରରେ । ଏସବୁ କୃତିତ୍ୱ ଯୋଗୁଁ ତୁମ ପାଖରେ ମୋର କୃତଜ୍ଞତାର ଶେଷ ନାହିଁ । ଆଜି ମୋ ପାଇଁ ବଡ଼ ଆନନ୍ଦର ଦିନ । ମୋ






ପିତାଙ୍କ ଆତ୍ମାକୁ ଯେ ଶାନ୍ତି ମିଳବ, ଏଥିରେ ମୋର ସନ୍ଦେହ ନାହିଁ ।"

ଭଲ୍ଲୁକକେତୁ ଯାଇ ମହଲର ଫାଟକ ସାମ୍ନାରେ ଅବତରଣ କଲା । ସଙ୍ଗେ ସଙ୍ଗେ ପିଶାଚ ଗଧ ମଧ୍ୟ ଅବତରଣ କଲା । ଫାଟକ ଆଗରେ ଦୁଇଜଣ ଭୀଷଣକାୟ ଦରୁଆନ୍ ଠିଆ ହୋଇଥାନ୍ତି । ପଦ୍ମପାଦଙ୍କୁ ଦେଖି ସେମାନେ ଖୁସିରେ କୌଣସି ଧ୍ୱନି ଦେଲେ ।

ପଦ୍ମପାଦ ମହଲ ଆଡ଼େ ଅଗ୍ରସର ହେଲେ । ପିଙ୍ଗଳ ତାଙ୍କୁ ଅନୁସରଣ କଲା । ପିଙ୍ଗଳ ଜଣେ ବୃଦ୍ଧଙ୍କୁ ଦେଖି ପାରିଲା । ସେ ପଦ୍ମପାଦଙ୍କୁ ଓ ତାକୁ ପାଛୋଟି ନେବା ଭଳି ଭାବ ଦେଖାଇ ଆଗକୁ ଆସୁଥିଲେ ।

ପଦ୍ମପାଦ ବୃଦ୍ଧଙ୍କ ସହ ପିଙ୍ଗଳର ପରିଚୟ କରାଇଦେଇ କହିଲେ, "ଏ ମହାଶୟ ହେଲେ ମୋ ପିତାଙ୍କ ଗୁରୁ ।" ପିଙ୍ଗଳ ବୃଦ୍ଧଙ୍କୁ ନମସ୍କାର କରନ୍ତେ ବୃଦ୍ଧ ପଚାରିଲେ, "ଇଏ କିଏ ? ଅବନ୍ତୀ ନଗରୀର ଧୀବର ଯୁବକ ନୁହେଁ ତ ?"

"ଗୁରୁଦେବ ! ଆପଣଙ୍କ ଅନୁମାନ ଠିକ୍ ।" ପଦ୍ମପାଦ କହିଲେ ।

"ତାହାହେଲେ ମହାମାୟୀଙ୍କ ସମାଧି ଥିବା ମନ୍ଦିରକୁ ଯାଇ ଅପୂର୍ବ ରତ୍ନମାନ ହସ୍ତଗତ କରିପାରିଛ ବୋଲି ମନେ ହୁଏ !" ଆନନ୍ଦରେ ବିଭୋର ହୋଇ ବୃଦ୍ଧ କହିଲେ ।

ପଦ୍ମପାଦ କିଛି ନକହି ବୃଦ୍ଧଙ୍କୁ ଅଙ୍ଗୁଠି, ରତ୍ନଖଚିତ ଖଡ୍ଗ ଏବଂ ଗୋଲକଟି ଦେଖାଇଲେ । ବୃଦ୍ଧ କିଛି ସମୟ ସେସବୁ ଦେଖି କହିଲେ, "ପଦ୍ମପାଦ ! ବର୍ତ୍ତମାନ ତମଠୁଁ ବଳି ଧାର୍ମିକ ଏ ପୃଥିବୀରେ କେହି ନାହିଁ । ତୁମ ପିତା ବହୁ କଷ୍ଟ କରି ମଧ୍ୟ ଏ ଦୁର୍ଲଭ ରତ୍ନମାନ ହସ୍ତଗତ କରିପାରି ନଥିଲେ । ତୁମେ ଏସବୁ ହାସଲ କରି ଅସମ୍ଭବ ସମ୍ଭବ କରିଛ କହିଲେ ଭୁଲ ହେବ ନାହିଁ । ତମ ପିତାଙ୍କ ଆତ୍ମା ଶାନ୍ତି ପାଇବ ।"

"ଗୁରୁଦେବ, ମୋ ପିତା ଯେଉଁ ମନ୍ତ୍ରଗ୍ରନ୍ଥ ରଖିଯାଇଛନ୍ତି, ବର୍ତ୍ତମାନ ତାହା ମୋର ତ ?" ପଦ୍ମପାଦ ପଚାରିଲେ ।

ବୃଦ୍ଧ ହସିଲେ ଓ କହିଲେ, "ଆରେ ପୁଅ, ତମେ ବର୍ତ୍ତମାନ ଯେଉଁ ଶକ୍ତି ଆୟତ୍ତ

କରିପାରିଛ, ତା'ପରେ ଆଉ ସେ ମନ୍ତ୍ର ଗ୍ରନ୍ଥର ଉପଯୋଗିତା ତମ ପାଇଁ କ'ଣ ? ତମ ପିତା ଓ ମହାମାତ୍ୟଙ୍କ ଭିତରେ ପ୍ରବଳ ଶତ୍ରୁତା ଥିଲା । ତମ ପିତା ନିଜ ଜୀବନରେ ଯାହା କରିପାରିଲେ ନାହିଁ, ତାଙ୍କ ପୁଅମାନଙ୍କ ଭିତରୁ କେହିହେଲେ ତାହା କରିପାରୁ, ଏହି ଉଦ୍ଦେଶ୍ୟରେ ସେ ସେଭଳି ସର୍ତ୍ତ ରଖିଥିଲେ । ତମେ ବର୍ତ୍ତମାନ ସ୍ତ୍ରିଭୁବନ ଉପରେ ବିଜୟ ହାସଲ କଲ ।"

ବର୍ତ୍ତମାନ ପଦ୍ମପାଦଙ୍କ ପାଖରେ ସବୁକଥା ପରିଷ୍କାର ହୋଇଗଲା । ସେ ବୁଝିଲେ ଯେ ନିଜ ଉଦ୍ଦେଶ୍ୟ ପୂରଣ କରିବା ନିମନ୍ତେ ତାଙ୍କ ପିତା ସେ ତନ୍ତ୍ରଗ୍ରନ୍ଥ ପାଇବାକୁ ହେଲେ କ'ଣ କରିବାକୁ ହେବ ସେ ସର୍ତ୍ତ ରଖିଯାଇଥିଲେ ।

ବୃଦ୍ଧ ପିଙ୍ଗଳଙ୍କ କାନ୍ଧ ଥାପୁଡ଼ାଇ ଦେଇ କହିଲେ, "କାହିଁ କେତେ ଦୂରରେ ତମର ଘର । ମାଛଧରି ଜୀବିକା ନିର୍ବାହ କରୁଥିଲ । କିନ୍ତୁ ଦେଖ ଭାଗ୍ୟର ଖେଳ । ପଦ୍ମପାଦ ସହ ତମର ଯୋଗାଯୋଗ ହୋଇଗଲା । ତମେ ଅସାଧ୍ୟ କାମ କରିପାରିଲ । ତମେ ବାସ୍ତବିକ ଅଭିନନ୍ଦନ ଯୋଗ୍ୟ ।"

ପିଙ୍ଗଳ ପଦ୍ମପାଦଙ୍କ ମହଲରେ ଏକ ସପ୍ତାହ କଟାଇ ନିଜ ଘରକୁ ଯିବାକୁ ବାହାରିଲେ । ପଦ୍ମପାଦ ତାଙ୍କୁ ଅନେକ ଧନରତ୍ନ ଉପହାର ଦେଲେ । ସଙ୍ଗେ ସଙ୍ଗେ ମହାମାତ୍ୟଙ୍କ ସମାଧିରୁ ପ୍ରାପ୍ତ ବସ୍ତୁମାନ ଦେଖାଇ କହିଲେ,




"ପିଙ୍ଗଳ, ତମେ ଏଥିରୁ ଯେକୌଣସି ଗୋଟିଏ ବସ୍ତୁ ନେଇଯାଇ ପାର । ମୁଁ ମୋଟେ ଆପତ୍ତି କରିବ ନାହିଁ ।" ପିଙ୍ଗଳ କହିଲା, "ନା, ପଦ୍ମପାଦ, ଏସବୁ ବସ୍ତୁ ମୋ ପାଖରେ ଶୋଭା ପାଇବ ନାହିଁ । ଯିଏ ତନ୍ତ୍ରବିଦ୍ୟାରେ ଅସାଧାରଣ ଜ୍ଞାନ ଲାଭ କରିଥିବ, ସେ କେବଳ ଏସବୁର ଯଥାର୍ଥ ଉପଯୋଗ କରିପାରିବ । ତେବେ ତମେ ଯଦି ଦେଇ ପାରିବ, ମୁଁ ଆଉ ଗୋଟାଏ ଜିନିଷ ନେବାକୁ ଚାହେଁ ।"

"କି ଜିନିଷ ? ନିଃସଙ୍କୋଚରେ କୁହ ।" ପଦ୍ମପାଦ କହିଲେ ।

"ତୁମ ପାଖରେ ଗୋଟାଏ ଯାଦୁ ଥଳି ଅଛି । ସେଥିରୁ ଯେତେବେଳେ ଯେଉଁ ଖାଦ୍ୟ

ଲେଡ଼ା ତାହା ମିଳି ପାରିବ । ମୋ ମା ଆସି ବୁଢ଼ୀ ହେଲଣି । ଯଦି ସେ ଥଳଟି ମୁଁ ପାଇଯା'ନ୍ତି, ତେବେ ସିଏ ଶେଷେଇ ଦାଯ୍ୱିତ୍ୱରୁ ବାଞ୍ଚ ପାଆନ୍ତା ।" ପିଙ୍ଗଳ କହିଲା ।

ପଦ୍ମପାଦ ଆନନ୍ଦରେ ଯାଦୁ ଥଳଟି ତାକୁ ଦେଇଦେଲେ । ତା'ପରେ ବୃଦ୍ଧ ଗୁରୁ ଓ ପଦ୍ମପାଦଙ୍କଠାରୁ ବିଦାୟ ନେଇ ପିଙ୍ଗଳ ଭଲ୍ଲୁକକେତୁର କାନ୍ଧରେ ବସି ଅବନ୍ତୀ ନଗରୀ ଅଭିମୁଖେ ଚାଲିଲା ।

ମେଘମାଳା ଭିତର ଦେଇ ଉଡ଼ିଯାଇ ଦୁଇ ପହର ବେଳକୁ ଭଲ୍ଲୁକକେତୁ ଅବନ୍ତୀରେ ପହଞ୍ଚିଗଲା । ଦୂରରୁ ନିଜ କୁଡିଆ ଘର ଆଖିରେ ପଡ଼ିବା ମାତ୍ରେ ପିଙ୍ଗଳ ଭଲ୍ଲୁକକେତୁକୁ କହିଲା, "ବାବୁ, ତମେ ଏଇଠି ମୋତେ ଓହ୍ଲାଇ ଦିଅ ।"

ପିଙ୍ଗଳର କୁଡିଆ ସହର ବାହାରେ ଗୋଟାଏ ପଡିଆ ପାଖରେ । ପଡ଼ିଆର ଗୋଟାଏ ପ୍ରାନ୍ତରେ ଭଲ୍ଲୁକକେତୁ ଅବତରଣ କଲା ।

"ମାଲିକ ! ଏଥର ମୁଁ ଯାଉଛି । ଆପଣଙ୍କ ସହ ମଣିଷଙ୍କ ଭିତରେ ମୁଁ କିପରି ରହିବି ? ଆପଣଙ୍କର ଯେତେବେଳେ ଦରକାର ହେବ, ଗୋଟାଏ ମନ୍ତ୍ର ପଢ଼ିବେ । ମୁଁ ସଙ୍ଗେ ସଙ୍ଗେ ଆସିଯିବି ।" ଏହା କହି ଭଲ୍ଲୁକକେତୁ ପିଙ୍ଗଳକୁ ଛୋଟିଆ ମନ୍ତ୍ରଟିଏ ଶିଖାଇ ସେଠାରୁ ଚାଲିଗଲା ।

ପିଙ୍ଗଳ ନିଜ କୁଡିଆର ଯେତିକି ନିକଟବର୍ତ୍ତୀ ହେଲା, ସେତିକି ମାତ୍ରାରେ ବିସ୍ମିତ ଓ ଦୁଃଖିତ ହେଲା । କୁଡ଼ିଆ ଭୁଷୁଡ଼ି ପଡ଼ିଥାଏ । ଛପର ଉଡି ଯାଇଥାଏ । କଙ୍କାଳସାର ହୋଇ ବୁଢ଼ୀଟିଏ କୁଡ଼ିଆ ଆଗରେ ବସିଥାଏ ।

ପିଙ୍ଗଳ ବୁଢ଼ୀକୁ ଚିହ୍ନିଲା । ସେ ତା' ମାଆ । କିନ୍ତୁ ବୁଢ଼ୀ ପିଙ୍ଗଳକୁ ହଠାତ୍ ଚିହ୍ନି ପାରିଲା ନାହିଁ । "ବାବୁ, ଏ ବୁଢ଼ୀକୁ ମୁଠିଏ ଖାଇବାକୁ ଦିଅ !" ସେ କହିଲା । ପିଙ୍ଗଳ କାନ୍ଦି ପକାଇ କହିଲା, "ମା, ମା ! ଇଏ କ'ଣ ? ତମର ଏଭଳି ଦୁର୍ଦ୍ଦଶା ହେଲା କିପରି ?" (କ୍ରମଶଃ)






# ମହଣେ ସୁନା

ନିଶା ଗରଜୁଥାଏ । ତୁହାକୁ ତୁହା ବର୍ଷା ହେଉଥାଏ । ଘଡ଼ଘଡି ସାଥିକୁ ଶୁଭୁଥାଏ ଶ୍ୱାନଶ୍ୱାପଦଙ୍କ ରଡ଼ି । ସେସବୁ ମଝିରେ ପୁଣି ଶୁଣାଯାଉଥାଏ ଅଶରୀରୀମାନଙ୍କ ଅଟ୍ଟହାସ୍ୟ । ଘନ ଘନ ବିଜୁଳି ଆଲୁଅରେ ଦିଶିଯାଉଥାଏ ଭୟାବହ ମୁହଁଟିମାନ ।

କିନ୍ତୁ ରାଜା ବିକ୍ରମାର୍କ ତିଳେ ମଧ୍ୟ ବିଚଳିତ ବୋଧ ନକରି ପୁନର୍ବାର ସେ ପ୍ରାଚୀନ ବୃକ୍ଷଟି ପାଖକୁ ଲେଉଟି ଆସିଲେ ଓ ବୃକ୍ଷାରୋହଣ କରି ଶବଟିକୁ ଉତାରି ଆଣିଲେ । କିନ୍ତୁ ତାକୁ କାନ୍ଧରେ ପକାଇ ଶୁନ୍‌ଶାନ୍ ଶ୍ମଶାନ ପଥ ଅତିକ୍ରମ କରିବାକୁ ଆରମ୍ଭ କରିବା ମାତ୍ରେ ଶବସ୍ଥିତ ବେତାଳ କହିଲା, "ରାଜା! ତମେ ଯେ ବୁଦ୍ଧିମାନ ଓ ଚତୁର, ଏଥିରେ ମୋର ସନ୍ଦେହ ନାହିଁ । ହୁଏତ ତୁମକୁ ଯିଏ ଏଭଳି ଦୁଃସାହସିକ କାମରେ ଲଗାଇଛି, ଯିଏ ମଧ୍ୟ

## ବେତାଳ କଥା



ବୁଦ୍ଧିମାନ ଓ ଚତୁର । କିନ୍ତୁ ଜାଣିଥାଅ, ଅନେକ ସମୟରେ ଚତୁରମାନେ ଯେଉଁଠି ପରାଜିତ ହୁଅନ୍ତି, ସରଳ ଲୋକେ ସେଠି ବିଜୟ ଲାଭ କରନ୍ତି । ଦୃଷ୍ଟାନ୍ତ ଦେଉଛି, ଶୁଣ । ଶୁଣିଲେ ଶ୍ରମଭାର ଲାଘବ ମନେ ହେବ ।"

ବେତାଳ ଗପିଲା: ମଦନପୁର ନାମକ ନଗରୀରେ ଜୟଦେବ ନାମକ ଯୁବକ ଥିଲା । ସେ ଅତ୍ୟନ୍ତ ଭୋଳା ଓ ସରଳ ବୋଲି ସମସ୍ତେ ଜାଣିଥିଲେ । ତେବେ ଅଧିକାଂଶ ଲୋକେ ତାକୁ ସ୍ନେହ କରୁଥିଲେ ।

ସେହି ନଗରୀରେ ଶ୍ରୀଭଦ୍ର ନାମକ କୋଟିପତି ବଣିକ ଥିଲେ । ତାଙ୍କର ଏକମାତ୍ର ସନ୍ତାନ ହେଲା କଲ୍ୟାଣୀ ନାମକ କନ୍ୟା । ଦିନେ ଜୟଦେବ କଲ୍ୟାଣୀକୁ ଦେଖିବାର ସୁଯୋଗ ପାଇଲା । ସେ ଭାବିଲା, ସେ କଲ୍ୟାଣୀକୁ ବିବାହ କରିବା ପାଇଁ ପ୍ରାର୍ଥୀ ନହେବ କିଆଁ ? ସେ ଭୁଲିଗଲା ଯେ କଲ୍ୟାଣୀ ଜଣେ କୋଟିପତିଙ୍କର କନ୍ୟା ଏବଂ ସେ ଜଣେ ଗରିବ ଯୁବକ ।

ଜୟଦେବର ଜଣେ ବନ୍ଧୁ ଥାଏ । ତା'ର ନାମ ସୁକୁମାର । ସେ ବଡ଼ ଧୂର୍ତ୍ତ । ଜୟଦେବ ଉପରେ ସମସ୍ତଙ୍କର ସ୍ନେହ ଥାଏ ବୋଲି ସେ ଜୟଦେବକୁ ଈର୍ଷା ବି କରୁଥାଏ । କିନ୍ତୁ ସରଳମତି ଜୟଦେବ ତାକୁ ବିଶ୍ୱାସ କରୁଥାଏ । କଲ୍ୟାଣୀକୁ ବିଭା ହେବା ନିମନ୍ତେ ସେ ଯାଇ ସୁକୁମାର ପାଖରେ ନିଜର ଅଭିଳାଷ ବ୍ୟକ୍ତ କରନ୍ତେ ସୁକୁମାର ମନେ ମନେ ହସିଲା । କିନ୍ତୁ ଜୟଦେବକୁ ଅପଦସ୍ତ କରିବା ନିମନ୍ତେ ସେ କହିଲା, "ଏଇ କଥା ? ତୋଭଳି ଯୋଗ୍ୟ ବରପାତ୍ର ପାଇଲେ କିଏ ନିଜକୁ ଭାଗ୍ୟବାନ ମନେ ନ କରିବ ? ତୁ ଯାଇ ଶ୍ରୀଭଦ୍ରଙ୍କୁ ସିଧାସଳଖ ତୋ ମନକଥା କହୁନୁ ?"

ସୁକୁମାରର ଧାରଣା ଥିଲା, ସେପରି କଲେ ଜୟଦେବ ଧକ୍କା ଖାଇ ଫେରି ଆସିବ । ମଜା ହେବ ।

ଜୟଦେବ ସୁକୁମାରର ପରାମର୍ଶକୁ ସତ୍-ପରାମର୍ଶ ମନେ କରି ସନ୍ଧ୍ୟାବେଳେ ଯାଇ ଶ୍ରୀଭଦ୍ରଙ୍କୁ ଭେଟି ଅଭିବାଦନ କରି କହିଲା, "ମହାଶୟ ! ମୋର ଅନୁରୋଧ, କଲ୍ୟାଣୀ ସହ ଆପଣ ମୋର ବିବାହ ଦିଅନ୍ତୁ ।"



ଶ୍ରୀଭଦ୍ର କୌତୂହଳୀ ହୋଇ ଜୟଦେବକୁ ଭଲ ଭାବରେ ଲକ୍ଷ୍ୟ କଲେ । ସେ ଥିଲେ ଅତ୍ୟନ୍ତ ଅଭିଜ୍ଞ ଓ ବୁଦ୍ଧିମାନ ବ୍ୟକ୍ତି । ସେ ବୁଝିପାରିଲେ ଯେ ଜୟଦେବ ସରଳ ପିଲା । ତା' ପ୍ରତି କଠୋର ବ୍ୟବହାର କରିବାକୁ ତାଙ୍କର ମନ ହେଲା ନାହିଁ । ତେଣୁ ସେ କୌଶଳରେ ତାକୁ ଏଡ଼ାଇ ଯିବାକୁ ଚାହିଁଲେ ସେ କହିଲେ, "ବାପା! ମୋର ସେଥିରେ ଆପତ୍ତି ନାହିଁ । କିନ୍ତୁ ଗୋଟିଏ ସର୍ତ୍ତ ପୂରଣ କରିବାକୁ ହେବ । ମାସକ ଭିତରେ ଯଦି ମହଣେ ସୁନା ଆଣି ମୋତେ ଦେଖାଇ ପାରିବ, ତେବେ କଲ୍ୟାଣୀକୁ ବିଭା ହୋଇ ପାରିବ ।"

ଜୟଦେବ ଖୁସି ହୋଇ ତାଙ୍କୁ ନମସ୍କାର ପକାଇ ବାହାରିଗଲା । ତା'ପରେ ସେ ଯାଇ ପୁଣି ସୁକୁମାର ପାଖରେ ପହଞ୍ଚିଲା ଓ କହିଲା, "ଭାଇ, ବାହାଘର ପାଇଁ ଶ୍ରୀଭଦ୍ରଙ୍କର ତିଳେ ବି ଆପତ୍ତି ନାହିଁ । ଖାଲି ମହଣେ ସୁନା ତାଙ୍କୁ ନେଇ ଦେଖାଇବା କଥା । କେଉଁଠୁ ମିଳିବ?"

ସୁକୁମାର ହସ ଚାପି ପାରିଲା ନାହିଁ । ତେବେ ପରେ ପରେ ଗାମ୍ଭୀର୍ଯ୍ୟର ଅଭିନୟ କରି କହିଲା, "ସତେ ତ! ମହଣେ ସୁନା କିଏ ଦେଇ ପାରିବ? ହଁ, ନଈ ସେପାରିରେ ଯେଉଁ ଯୋଗୀ ଆସି ଡେରା ପକାଇଛନ୍ତି, ସେ ପିତଳ, ତମ୍ବା ଇତ୍ୟାଦି ଧାତୁକୁ ସୁନାରେ ପରିଣତ କରିପାରନ୍ତି । ଯା; ତାଙ୍କୁ କହ ।"

ସୁକୁମାର ଯାହାଙ୍କ କଥା କହିଲା, ସେ ଯୋଗୀ ନୁହେଁ ଭଣ୍ଡ । ସହରର ଅନେକ ଲୋକଙ୍କୁ ସେ ଠକିଥିବା କଥା ସୁକୁମାର ଜାଣିଥିଲା । ସେ ଜୟଦେବର ସର୍ବସ୍ୱ ବି ଲୁଣ୍ଠନ କରିବ, ସୁକୁମାର ଏଇଆ ଭାବିଥିଲା ।

ଜୟଦେବ ଯାଇ ଭଣ୍ଡ ଯୋଗୀ ପାଖରେ ପହଞ୍ଚି ସବୁ କହିଲା ଓ ଲୁହା ପିତଳରୁ ମହଣେ ସୁନା ତିଆରି କରିଦେବାକୁ ଅନୁରୋଧ କଲା ।

ସେତେବେଳେ ସେ ଅଞ୍ଚଳରେ ଗୌରବମୁଖ ନାମକ ଗୋଟିଏ ଭୀଷଣ ଡାକୁ ମାତିଥାଏ । ପୂର୍ବଦିନ ରାତିରେ ସେ ଡାକୁ ଭଣ୍ଡଯୋଗୀର ଡେରା ଲୁଣ୍ଠନ କରିଥାଏ । ଭଣ୍ଡଯୋଗୀ ନିଜେ ବି ଅନ୍ୟମାନଙ୍କୁ ଠକି ଟଙ୍କାପଇସା ଆଣି ଜମା



କରିଥାଏ; ତେଣୁ ସେ ତା'ର ସବୁ ଲୁଣ୍ଠନ ହୋଇଯାଇଥିବା ବିଷୟରେ କାହାକୁ କିଛି କହିପାରୁ ନଥାଏ । ବର୍ତ୍ତମାନ ସେ ଜୟଦେବକୁ କହିଲା, "ତମେ ଯଦି ଡାକୁ ଗୌରବମୁଖକୁ ଧରିନେଇ ଆସି ପାରିବ, ତେବେ ତମକୁ ମହଣେ ସୁନା ଦେବ ।" ଡାକୁ ଯେଉଁ ଜଙ୍ଗଲଭର୍ତ୍ତି ପାହାଡ଼ିଆ ଅଞ୍ଚଳରେ ରହୁଥାଏ, ଜୟଦେବ ସେହି ଅଭିମୁଖେ ଚାଲିଲା । ଏକୁଟିଆ କେହି କେବେ ସେ ଅଞ୍ଚଳ ଭିତରେ ପ୍ରବେଶ କରିବାର ସାହସ ପାଉନଥିଲେ । ନିରସ୍ତ୍ର ଜୟଦେବ ସେଆଡେ ଏକମୁହାଁ ହୋଇ ଚାଲିଥିବାର ଦେଖି ଡାକୁର ଜଣେ ଅନୁଚର ଆଶ୍ଚର୍ଯ୍ୟ ହୋଇ ତାକୁ ପଚାରିଲା, "କୁଆଡେ ଯାଉଛ ?"

"ମୁଁ ଡାକୁ ସର୍ଦ୍ଦାର ଗୌରବମୁଖକୁ ଭେଟିବାକୁ ଯାଉଛି ।" ଉତ୍ତର ଦେଲା ଜୟଦେବ । ଡାକୁର ଅନୁଚର ଆହୁରି ଆଶ୍ଚର୍ଯ୍ୟ ହୋଇ ତାକୁ ନେଇଯାଇ ଡାକୁ ସର୍ଦ୍ଦାର ଆଗରେ ହାଜର କରାଇଲା ।

"ସର୍ଦ୍ଦାର ! ତମେ ମୋ ସାଙ୍ଗରେ ଥରେ ସେ ଯୋଗୀ ପାଖକୁ ଚାଲ । ତମେ ସେତିକି କଲେ ମୁଁ ମହଣେ ସୁନା ପାଇବି । ପାଇଲେ ଶ୍ରୀଭଦ୍ରଙ୍କ କନ୍ୟାଙ୍କୁ ବାହା ହେବି ।" ଜୟଦେବ ଏହା କହି ସବୁ ଘଟଣା ଗପିଲା ।

ଡାକୁ ସର୍ଦ୍ଦାର ଜୟଦେବର ସରଳ ବିଶ୍ୱାସ ଦେଖି ଅବାକ୍ ହେବା ସଙ୍ଗେ ସଙ୍ଗେ ମଉଜ ଅନୁଭବ କଲା । ସେ କହିଲା, "ଟୋକା ! ମୋତେ ସେ ଭଣ୍ଡ ଯୋଗୀ ପାଖକୁ ନେଇଯିବା ଦରକାର ନାହିଁ । ପଶ୍ଚିମ ଦିଗରେ ସେଇ ଯେଉଁ ପାହାଡ଼, ତା'ର ଗୁମ୍ଫା ଭିତରେ ଗୋଟାଏ ପିଶାଚ ଅଛି । ତାକୁ ମାଗିଲେ ସେ ସଙ୍ଗେ ସଙ୍ଗେ ତୋତେ ସୁନା ଦେଇଦେବ ।"

ସେ ପାହାଡ଼ ଗୁମ୍ଫାରେ ସତରେ ଗୋଟିଏ ପିଶାଚ ଥାଏ । ତାକୁ ଯିଏ ଦେଖୁଥାଏ ସେ ଭୟରେ ମୂର୍ଚ୍ଛା ଯାଉଥାଏ, ନହେଲେ ଅତର୍କ ଦୌଡ଼ି ପଳାଇ ଯାଉଥାଏ । ସେ ପିଶାଚ ଦେଖିବାକୁ ଏଡ଼େ ଭୟଙ୍କର ! ସମସ୍ତେ ଡରୁଥାନ୍ତି ଥରେ ତା' ହାବୁଡ଼ରେ ପଡ଼ିଲେ ଆଉ ପ୍ରାଣ ଧରି ଫେରିବାର ଆଶା ନାହିଁ ।

ପ୍ରକୃତ କଥା କିନ୍ତୁ ଭିନ୍ନ । ସେ ପିଶାଚ ଦେଖିବାକୁ ସିନା ଭୀଷଣ, ହୃଦୟରେ କିନ୍ତୁ ସେ ବଡ଼ ଦୟାଳୁ । କେହି ତା' ସହ କଥାବାର୍ତ୍ତା ହୋଇ ନଥିଲେ । ତା' ଦୟାଶୀଳତା ବିଷୟ କାହାକୁ ଜଣା ନଥିଲା ।

ଜୟଦେବ ଯାଇ ପିଶାଚ ଆଗରେ ଠିଆ ହୋଇଗଲା ଓ ମୂଳରୁ ସବୁ କଥା ଗପିଗଲା । ପିଶାଚ ଗୋଟାଏ ମଣିଷ ସହ କଥାବାର୍ତ୍ତା ହେବାର ସୁଯୋଗ ପାଇ ବହୁତ ଖୁସି ହେଲା । ସେ ଜୟଦେବକୁ କେଇ ଖଣ୍ଡି ହୀରା ଦେଖାଇ କହିଲା, "ଏତକର ମୂଲ୍ୟ ମହଣେ ସୁନାର ମୂଲ୍ୟଠୁଁ ଅଧିକ । ଏହାର ଦଶଗୁଣ ବି ମୁଁ ଦେଇପାରେଁ । ତମେ ଯାଇ ଶ୍ରୀଭଦ୍ରକୁ ଏକଥା କୁହ । ଏହା ଶୁଣିବା ପରେ ବି ଯଦି ସେ ମହଣେ ସୁନା ମାଗିବ, ମୋତେ ଆସି ତୁମେ ଭେଟିବ । ମୁଁ ଦେଇଦେବି ।"

"ଧନ୍ୟବାଦ!" କହି ଜୟଦେବ ସିଧା ଯାଇ ଶ୍ରୀଭଦ୍ରଙ୍କ ଘରେ ପହଞ୍ଚିଲା ଓ ଆମୂଳଚୂଳ ତା' ଅଭିଯାନ କାହାଣୀ ବର୍ଣ୍ଣନା କଲା । ଶ୍ରୀଭଦ୍ର ଆଶ୍ଚର୍ଯ୍ୟ ହୋଇ ସବୁ ଶୁଣିଲେ । ତା'ପରେ ଜୟଦେବର ପିଠି ଥାପୁଡ଼େଇ ଦେଇ କହିଲେ, "ବାପା! ମୁଁ ମହଣେ ସୁନା ପାଇଗଲି ବୋଲି ଜାଣ । ତମେ ଆଉ ଏଣେତେଣେ ଯିବା ଲୋଡ଼ା ନାହିଁ । ଗଣକ ଡକାଉଛୁ । ତିଥି ସ୍ଥିର ହେଲେ ତମ ସହ କଲ୍ୟାଣୀର ବିବାହ ହୋଇଯିବ ।"

ବେତାଳ ଟିକିଏ ଚୁପ୍ ରହି ଗମ୍ଭୀର କଣ୍ଠରେ ପ୍ରଶ୍ନ କଲା, "ରାଜା! ଶ୍ରୀଭଦ୍ରଙ୍କ ଆଚରଣ



ଅସ୍ୱାଭାବିକ ମନେ ହେଉନାହିଁ କି? ସେ ଏତେ ଧନୀ। କାହିଁକି ଜୟଦେବ ଭଳି ଗରିବ ଯୁବକକୁ କନ୍ୟା ଦେବାକୁ ସମ୍ମତ ହେଲେ? ପୁଣି ପିଶାଚ ହାର ଦେବାକୁ ପ୍ରସ୍ତୁତ ଥିବା ସତ୍ତ୍ୱେ ସେ କାହିଁକି ଜୟଦେବଙ୍କୁ ପଠାଇ ତାହା ନ ଆଣିଲେ? ସେ ପିଶାଚକୁ ଡରଯାଇ ଜୟଦେବଙ୍କୁ ଝିଅ ଦେବାକୁ ରାଜି ହୋଇଗଲେ। ନା, ଆଉ କିଛି କାରଣ ଅଛି?"

ମୁହୂର୍ତ୍ତେ ମଧ୍ୟ ବିଳମ୍ବ ନକରି ରାଜା ବିକ୍ରମାର୍କ ଉତ୍ତର ଦେଲେ, "ଶ୍ରୀଭଦ୍ରଙ୍କର ପିଶାଚ ପ୍ରତି ଭୟ ନଥିଲା କି ଧନ ପ୍ରତି ଆକର୍ଷଣ ନଥିଲା। ସେ ଥିଲେ ମହତ୍ ତଥା ବୁଦ୍ଧିମାନ ଲୋକ। ସେ ଦେଖିଲେ, ଛଳ କପଟ, ବେପାରବୁଦ୍ଧି ଆୟତ୍ତ କରିପାରିବା ଯୁବକ ସମାଜରେ ଅଭାବ ନାହାନ୍ତି। କିନ୍ତୁ ଜୟଦେବ ଭଳି ସରଳ, ସତ୍ୟବାଦୀ ଓ ସାହସୀ ଯୁବକ କୋଟିକରେ ଗୋଟିଏ ଥିବେ। ସେ ଦେଖିଲେ, ଯେଉଁ ଯୁବକର ସରଳତାରେ ମୁଗ୍ଧ ହୋଇ ପିଶାଚଟିଏ ମଧ୍ୟ ସହାୟତା କରିବାକୁ ପ୍ରସ୍ତୁତ, ସେ ନିଜେ ମଣିଷ ହୋଇ ସେ ଯୁବକର ସେ ଗୁଣ ପ୍ରତି ଆଦର ନ ଦେଖାଇବେ କପରି? ତା'ଛଡ଼ା ଜୟଦେବଙ୍କୁ ଗରିବ ବୋଲି କାହିଁକି କୁହାଯିବ? ସେ ତ ଯାଇ ପିଶାଚଠାରୁ ଅକ୍ଳେଶରେ ବିପୁଳ ବିତ୍ତ ଆଣି ପାରନ୍ତା! ସେ ଜୟଦେବଙ୍କୁ ମହଣେ ସୁନା ଆଣିବାକୁ କହିଥିଲେ। ଭାବିଥିଲେ ଜୟଦେବ କଦାପି ସେ ସର୍ତ୍ତ ପୂରଣ କରି ପାରିବ ନାହିଁ। କିନ୍ତୁ ସରଳତା ଓ ସାଧୁତା ଦ୍ୱାରା ଯେ ଅସାଧ୍ୟ ସାଧନ ହୋଇପାରେ, ଜୟଦେବ ସେଇଆ ପ୍ରମାଣ କରିଦେଲା। ଶ୍ରୀଭଦ୍ରଙ୍କ ଜୀବନରେ ଏହା ହେଲା ଏକ ଅମୂଲ୍ୟ ଶିକ୍ଷା। ସେ ତେଣୁ କହିଲେ କି ସେ ମହଣେ ସୁନା ପାଇଗଲେ।"

ରାଜାଙ୍କ ଉତ୍ତର ପ୍ରଦାନ ଶେଷ ହେବା ସଙ୍ଗେ ସଙ୍ଗେ ଶବ ସହ ଶବସ୍ଥିତ ବେତାଳ ତାଙ୍କ କାନ୍ଧରୁ ଖସିଯାଇ ପୁନର୍ବାର ସେ ବୃକ୍ଷ ଡାଳରେ ଝୁଲି ପଡ଼ିଲା। (କଳ୍ପିତ)





# ଅତି ଯୋଗ୍ୟ ଶ୍ରୋତା!

ସୋନପୁରର ରାଜା ବୀରେନ୍ଦ୍ର ସେନଙ୍କର ହଠାତ୍ ସଙ୍ଗୀତ ଶିଖିବାକୁ ମନ ହେଲା । ତେଣୁ ପଡ଼ୋଶୀ ରାଜ୍ୟ ଭଦ୍ରପୁରର ରାଜ-ଦରବାରରେ ଥିବା ମହାନ ଗାୟକ ମୁରଲୀକୃଷ୍ଣ ମାସକରେ ଥରେ ଦୁଇ ତିନିଦିନ ପାଇଁ ସୋନପୁର ଆସି ରାଜାଙ୍କୁ ଗୀତ ଶିଖାଇଲେ ।

ରାଜା ଯେତେବେଳେ ଗୀତ ଅଭ୍ୟାସ କରିବାକୁ ବସିଲେ, ଦେଖାଗଲା, ମନ୍ତ୍ରୀ, ପୁରୋହିତ ଓ ସଭାସଦ୍‌ବର୍ଗ ଆସି ଆଗରେ ବସି ମୁଗ୍ଧ ହୋଇ ତାଙ୍କ ଗୀତ ଶୁଣୁଛନ୍ତି । କ୍ରମେ ସେମାନଙ୍କ ସହ ରାଜ-ସରକାରର ବିଭିନ୍ନ ବିଭାଗର ସଚିବମାନେ ଆସି ବସିବାକୁ ଲାଗିଲେ । କିଛିଦିନ ପରେ ସହକାରୀ ସଚିବମାନେ ବି ଆସି ବସିଗଲେ ଓ ରାଜା ଗାଇଲାବେଳେ ତାଳ ଦେବାକୁ ଲାଗିଲେ । ରାଜା ଯେମିତି ଗୀତ ଶେଷ କରିବେ, ସେମିତି ସମସ୍ତେ କହିବେ, "ବାହାବା, ବାହାବା ! ଆହା, ଆହା ! ଚୂଃ ଚୂଃ !"

ଏମିତି କିଛିଦିନ ଚାଲିଲା ।

ଦିନେ ରାଜା ଗୀତ ଗାଇବା ଶେଷ କରିବା ପରେ ସେପରିକି ଯିବାକୁ ସମସ୍ତଙ୍କୁ କଷ୍ଟ ହେଉଛି, ଏହିପରି ଭାବ ଦେଖାଇ ସମସ୍ତେ ଧିରେ ଧିରେ ଗଲେ । ଅର୍ଥାତ୍ ରାଜାଙ୍କ ଆଖି ଜଣ ଜଣ ସମସ୍ତଙ୍କ ଉପରେ ପଡ଼ିବା ପରେ ଯାଇ ସମସ୍ତେ ଗଲେ ; ତହିଁ ପୂର୍ବରୁ ନୁହେଁ ।

ସମସ୍ତେ ଯିବା ପରେ ବିଦୂଷକ ବସିଥାନ୍ତି । ରାଜା କହିଲେ, "ବିଦୂଷକ ! ମନେ ହୁଏ ମୋ ଗୀତରେ ଯାଦୁ ଅଛି ! କ'ଣ କହୁଛ ?"

"ଅଛି ମହାରାଜ, ଜରୁର୍ ଅଛି ।"

"କ'ଣ ସେ ଯାଦୁ ?" ରାଜା ପଚାରିଲେ ।

"ଆପଣ ଯଦି ଜାଣନ୍ତି, ତେବେ କହନ୍ତୁ । ମୁଁ କହିଲେ ବିପଦ ।"

ରାଜା ହସିଲେ ଓ କହିଲେ, "ସେ ଯାଦୁ ହେଲା ମୋ ରାଜପଦ । ମୋଠୁଁ ଭଲ ଗୀତ ବୋଲିବା ଲୋକ ଏ ରାଜ୍ୟରେ ଶତାଧିକ ଥିବେ । କିନ୍ତୁ ସେମାନଙ୍କର ସେ ଯାଦୁ ନାହିଁ ।"

"ଆପଣ ତ ସବୁ ବୁଝୁଛନ୍ତି । ତେବେ ଏମାନେ ରାଜକାର୍ଯ୍ୟରେ ହେଳା କରି ଏଠି ଆସି ବସିବାକୁ କାହିଁକି ସହ୍ୟ କରୁଛନ୍ତି ?"

"କଥା କ'ଣ କି, ପ୍ରଥମ ପ୍ରଥମେ ମନ୍ତ୍ରୀ ଓ ପୁରୋହିତ ବସୁଥିଲେ । ସେମାନେ ସମ୍ମାନିତ ବ୍ୟକ୍ତି । କିଛି କହି ପାରିଲି ନାହିଁ । ପରେ ଅନ୍ୟମାନେ ଯୋଗ ଦେଲେ । ସେମାନଙ୍କୁ ମନା କଲେ ସେମାନେ ଭାବିବେ ମନ୍ତ୍ରୀ ଓ ପୁରୋହିତ କ'ଣ ବଡ଼ ପଦର ଅଧିକାରୀ ବୋଲି ସଙ୍ଗୀତର ବଡ଼ ସମଝଦାର ? ତେଣୁ ସେମାନଙ୍କୁ ବି କିଛି କହି ପାରିଲି ନାହିଁ ।"

ବିଦୂଷକ ଗୋଟାଏ ପରାମର୍ଶ ଦେଲେ ।

ପରଦିନ ରାଜା ଗୀତ ଅଭ୍ୟାସ କରିବାକୁ ବସିବା ମାତ୍ରେ ଯେମିତି ସମସ୍ତେ ଆସି ଠୁଳ ହୋଇଛନ୍ତି, ସେମିତି ରାଜା କହିଲେ, "ହେ ସଙ୍ଗୀତ ପ୍ରେମୀବୃନ୍ଦ ! ମୋର ଗୋଟିଏ ଅନୁରୋଧ ଅଛି । ମୁଁ ଗାଇବା ଓ ଆପଣମାନେ ଶୁଣିବା ଆରମ୍ଭ ହେଲା ଏକ ସମୟରେ । କିନ୍ତୁ ମୁଁ ଗାୟକ ଭାବରେ ଏହା ଭିତରେ ଯେତିକି ପ୍ରଗତି କରିଛି, ଆପଣମାନେ ଶ୍ରୋତା ଭାବରେ ତାହାଠୁଁ ବହୁଗୁଣ ଅଧିକ ପ୍ରଗତି କରି ଯାଇଛନ୍ତି । ଆପଣମାନଙ୍କ ମୁଣ୍ଡ ହଲାଇବା, ତାଳ ଓ ବାହାବା ଦେବାରୁ ଏକଥା ସ୍ପଷ୍ଟ । ତେଣୁ ଆମ ଭିତରେ ବର୍ତ୍ତମାନ ବ୍ୟବଧାନ ବହୁତ । ଏଣିକି ଆପଣମାନେ ଆଉ ମୋ ଗୀତ ଶୁଣିବାକୁ ଆସନ୍ତୁ ନାହିଁ । ଯାଆନ୍ତୁ, ବେଗି ଯାଆନ୍ତୁ । କାମରେ ମନ ଦିଅନ୍ତୁ ।"

ଯେଉଁମାନେ ବୁଦ୍ଧିମାନ, ସେମାନେ ରାଜାଙ୍କ ଥଟ୍ଟା ବୁଝି ଅପମାନ ବୋଧ କରି ଚାଲିଗଲେ । ଯେଉଁମାନେ ନିର୍ବୋଧ, ସେମାନେ ଖୁବ୍ ଗର୍ବିତ ଅନୁଭବ କରି ଗଲେ । ଯାହାହେଉ, କାମ ହାସଲ୍ ହେଲା ।





# ବ୍ୟବସାୟର ରହସ୍ୟ

ଆନନ୍ଦ ଚୌଧୁରୀ ଗ୍ରାମର ଜଣେ ଜଣାଶୁଣା ଲୋକ। ତାଙ୍କର ଅନେକ ଚାଷଜମି ଥାଏ। ଘରେ ଚାରି ପୁଅ। କ୍ରମେ ଚାରିପୁଅ ବଡ଼ ହେଲେ ଓ ବିବାହ କଲେ। ପରିବାରଟି ମଧ୍ୟ କ୍ରମେ ବୃଦ୍ଧି ପାଇଲା। କିନ୍ତୁ ଘର ଚଳାଇବାର ସମସ୍ତ ଭାର ପଡ଼ିଲା ଆନନ୍ଦଙ୍କ ଉପରେ। ସେ ଭାବିଥିଲେ ବିବାହ ପରେ ହୁଏତ ପୁଅମାନେ ଦୂରକୁ ଯାଇ ଚାକିରି କରିବେ। କିନ୍ତୁ ଘର ଜମି ଛାଡ଼ି ଜଣେ ହେଲେ ପୁଅ ବାହାରକୁ ଗଲେନାହିଁ। ଏଣେ ଜମିବାଡ଼ ବୁଝାବୁଝି ମଧ୍ୟ ପୁଅମାନେ ବିଶେଷ କରନ୍ତି ନାହିଁ।

ଏସବୁ ଦେଖି ଆନନ୍ଦ ଚୌଧୁରୀ ଦିନେ ବଡ଼ ପୁଅକୁ ଡାକି କହିଲେ, "ପୁଅ, ଦେଖୁଛୁ ତ ଆମର ପରିବାର ବଢ଼ି ଚାଲିଛି; କିନ୍ତୁ ଆମଦାନୀ କିଛି ବଢ଼ୁନାହିଁ। ତୁ କେବେ ଏ ବିଷୟରେ କିଛି ଚିନ୍ତା କରିଛୁ କି ?"

ବଡ଼ପୁଅ କହିଲା, "ଯଦି ଆମ ଜମି ଯଥେଷ୍ଟ ହେଉନାହିଁ, ତେବେ ତମେ ଅନ୍ୟ ଲୋକର ଜମି ଭାଗକୁ ନିଅ।"

ଏକଥା ଶୁଣି ଆନନ୍ଦ ବହୁତ ଦୁଃଖିତ ହେଲେ। ସେ କହିଲେ, "ଆମେ ନିଜ ଜମି ଚାଷ କରିବା ଯୋଗୁ ଆମର ସମ୍ମାନ ରହିଛି। ଅନ୍ୟ ଜମି ଭାଗ ଚାଷ କରିବା ଦ୍ୱାରା ଆମର ଇଜ୍ଜତ କଡ଼ାକର ରହିବ ନାହିଁ।"

ତା'ପରେ ଅନ୍ୟ ତିନିଜଣ ପୁଅ ମଧ୍ୟ ସେହି ଏକହିଁ କଥା କହିଲେ। ଦୁଃଖିତ ହୋଇ ଆନନ୍ଦ ମନେ ମନେ ଭାବିଲେ, "ବୃକ୍ଷରୁ ବୀଜ ଚାରିପାଖରେ ଝଡ଼ି ହୋଇ ପଡ଼ିଲେ ଉପଯୁକ୍ତ ଜଳ ଓ ବାୟୁ ପାଇ ବଢ଼ିଥାଏ। ତା' ନ ହୋଇ ଗଛ ଛାଇରେ ଯଦି ରହିଯାଏ ତ ପାଣି, ପବନ ସୂର୍ଯ୍ୟକିରଣ ନପାଇ ଶୁଖିଯାଏ।

ସମରେନ୍ଦ୍ର




ଏମାନେ ବି ସେମିତି ଆଦରରେ ବଢ଼ କରୁଛି ଜାଣି ନାହାନ୍ତି !"

ଏକଥା ପୁଅମାନଙ୍କୁ କପରି ବୁଝାଇବେ ସେଇଆ ଚିନ୍ତା କରି କରୁଛି ଉପାୟ କରିବା ପାଇଁ ସହରକୁ ଚାଲିଗଲେ । ପରଦିନ ଆନନ୍ଦଙ୍କ ଘରେ ଜଣେ ଭିଲ ଲୋକ ଆସି ପହଞ୍ଚିଲା ।

ବଡ଼ ପୁଅ ଘରେ ଥାଏ । ସେ ବାହାରକୁ ଆସି ତାକୁ ପଚାରିଲା "ତମେ କାହା ସହିତ ଦେଖା କରିବାକୁ ଆସିଛ ?"

ଭିଲଟି କହିଲା, "ବାବୁ, ମୋର ଗୋଟିଏ ବାଉଁଶ ବଗିଚା ଅଛି । ମୁଁ ପଚାରିବାକୁ ଆସିଛି ଯଦି ଆପଣମାନଙ୍କ ମଧ୍ୟରୁ କେହି ଗଛଗୁଡ଼ିକୁ କାଟି ଜମିଟିକୁ ସମତଳ କରି ଦିଅନ୍ତେ ।"

ବଡ଼ ପୁଅ ମନରେ ଚିନ୍ତା କଲା କି ବାଉଁଶ ଗୁଡ଼ିକ ତ ମାଗଣା ମିଳିବ । ବାଉଁଶ କଟା ହେବା ପରେ ସହରରେ ବିକିଲେ ବହୁତ ଲାଭ ହେବ । ଅଳ୍ପ ପରିଶ୍ରମ ପରେ କେବଳ ସହରକୁ ନେବାକୁ ଯାହା ଖର୍ଚ୍ଚ ପଡ଼ିବ ତଥାପି ମଧ୍ୟ ଲାଭ କିଛିଟା ମିଳିବ ।

ମନେ ମନେ ଏକଥା ଭାବି ସେ ଭିଲ କଥାରେ ରାଜି ହେଲା । ବାଉଁଶ କଟାଇ ସହରକୁ ନେଲା । ସେଠାରେ ବିକିବାକୁ ଯାଉଛି ହଠାତ୍ ଦ୍ୱିତୀୟ ଭାଇ ଆସି ପହଞ୍ଚି କହିଲା, "ଭାଇ, ଏହାକୁ ବିକ ନାହିଁ । ଏହାକୁ ଚିରାଇ ବଡା କରିଦେଲେ ଜଣେ ବେପାରୀ ବହୁତ ମୂଲ୍ୟ ଦେଇ କିଣିବାକୁ ପ୍ରସ୍ତୁତ ଅଛି ।"

ଦୁଇଭାଇ ମିଳି ବାଉଁଶଗୁଡ଼ିକୁ ଚିରାଇଲେ । ପରଦିନ ଚିରା ହୋଇଥିବା ବାଉଁଶ ଗୁଡ଼ିକ ଗୋଟିଏ ଜାଗାରେ ଗଦା ହୋଇଥାଏ । ବେପାରୀ ସେଗୁଡ଼ିକ ନେବାକୁ ଆସିଥାଏ । ଏଇ ସମୟରେ ତୃତୀୟ ଭାଇ ଆସି ପହଞ୍ଚିଲା । ସେ କହିଲା, "ତମେ ଦି'ଭାଇ ଏ ଚିରା ବାଉଁଶକୁ ବହୁତ ଶସ୍ତାରେ ବିକୁଛ । ମୋ ସହିତ ଜଣେ ବୁଣାଳୀ ଆସିଛି, ସେ ଚାଟି, ଟୋକେଇ ଓ ଅନ୍ୟାନ୍ୟ ଜିନିଷ ଏଥିରେ ତିଆରି କରିଦେବ । ତା'ପରେ ସବୁ ଗୁଡ଼ିକ ଆମଠାରୁ ଜଣେ ବେପାରୀ କିଣି ନେବ । ସେଥିରେ ଆମେ ଅଧିକ ପଇସା ପାଇବା ।"

ଟୋକେଇ ଓ ତାଟି ଇତ୍ୟାଦି ବୁଣା ହେଲା । ପରେ ପରେ ଆନନ୍ଦଙ୍କର ଚତୁର୍ଥ ପୁତ୍ର ଆସି ସେଠାରେ ପହଞ୍ଚି କହିଲା, "ଏଗୁଡ଼ିକ ଆମେ ବେପାରୀଙ୍କୁ ନ ଦେଇ ନିଜେ ବିକିଲେ ତ ଆମକୁ ବହୁତ ପଇସା ମିଳିବ ।"

ତା'ପରେ ଚାରିଭାଇ ମିଶି ସେଗୁଡ଼ିକ ହାଟରେ ଭଲ ଦାମ୍‌ରେ ବିକ୍ରି କରିଦେଲେ । ପରେ ଲାଭକୁ ଚାରିଜଣ ବାଣ୍ଟି ନେବାକୁ ବସିଛନ୍ତି ଏଇ ସମୟରେ ଆନନ୍ଦ ଆସି ସେଠାରେ ପହଞ୍ଚି କହିଲେ, "ତମେମାନେ ବିକ୍ରି ଲବ୍ଧ ପଇସା ନିଜ ଭିତରେ ବାଣ୍ଟିବା ପୂର୍ବରୁ ପ୍ରଥମେ ବାଉଁଶର ଟଙ୍କା ଅଲଗା ରଖିଦିଅ ।"

ବାପାଙ୍କର ଏପରି କଥା ଶୁଣି ପୁଅମାନେ କହିଲେ, "ବାଉଁଶର ଦାମ୍ ଆମେ କାହିଁକି ଦେବୁ ? ସେସବୁ ତ ଆମକୁ ମାଗଣା ମିଳୁଛି ।"

ଆନନ୍ଦ ହସି ହସି କହିଲେ, "ଏଥର ସିନା ଖାଲି ତମକୁ ମାଗଣାରେ ବାଉଁଶ ଦେଇ ଦେଇଛୁ ! ବାରମ୍ବାର ତୁମେ ଏ ବ୍ୟବସାୟ କଲେ ତୁମକୁ କିଏ ମାଗଣା ଦେବ ? ଏକଥା କେବେ ତମେମାନେ ଚିନ୍ତା କରିଛ ?"

ଚାରିପୁଅ ଟିକିଏ ଚିନ୍ତା କରି କହିଲେ, "ଆପଣଙ୍କ କଥା ଠିକ୍ ।"

ଏଇ ବ୍ୟବସାୟରୁ ଚାରିଜଣ ବେଶ୍ ଭଲ ଭାବରେ ବୁଝି ଯାଇଥିଲେ ଯେ ବ୍ୟବସାୟ କରିବା ଏତେ ବଡ଼ କଠିନ କାମ ନୁହେଁ । ତା'ପରେ ଚାରିଜଣଯାକ ନିଜ ନିଜ ବୁଦ୍ଧି ଅନୁସାରେ ବ୍ୟବସାୟ କରି ସଫଳ ହେଲେ ।

ଆନନ୍ଦ ନିଜ ପୁତ୍ରମାନଙ୍କଠାରୁ ଗୋଟିଏ କଥା ଲୁଚାଇ ରଖିଥିଲେ । ସେଇଟି ହେଉଛି ଯେ ଖାଲି ବାଉଁଶର ମୂଲ୍ୟ ଆନନ୍ଦଙ୍କଠାରୁହିଁ ନେଇଥିଲା । ତା'ପରେ ଯେଉଁ ବେପାରୀମାନେ ବିକାକିଣା କରିବା ପାଇଁ ପୁଅମାନଙ୍କ ପାଖକୁ ଯାଉଥିଲେ, ସେମାନେ ସମସ୍ତେ ଆନନ୍ଦଙ୍କରହିଁ ବନ୍ଧୁ ଥିଲେ । ନାଟକଟି ଆନନ୍ଦହିଁ କରିଥିଲେ ନିଜ ବନ୍ଧୁମାନଙ୍କ ସହାୟତାରେ ବୋଲି ପୁଅମାନେ ଶେଷପର୍ଯ୍ୟନ୍ତ ଜାଣିପାରି ନଥିଲେ ।





# ଅର୍ଦ୍ଧେକ ରାଜ୍ୟ

ଥରେ ବୋଧିସତ୍ତ୍ୱ ସ୍ୱୟଂ କାଶୀର ରାଜା ଥିଲେ । ତାଙ୍କ ଶାସନ କାଳରେ ପ୍ରଜାମାନେ ଖୁବ୍ ସୁଖରେ ଥା'ନ୍ତି । ରାଜ୍ୟ ଖୁବ୍ ସମୃଦ୍ଧିଶାଳୀ ଥିଲା ଓ ସୁଶାସନ ଯୋଗୁ ପ୍ରଜାମାନେ କୌଣସି ପ୍ରକାର କଷ୍ଟ ଭୋଗୁ ନଥିଲେ ।

ଥରେ ରାଜ୍ୟର ସୀମାନ୍ତରେ ପାଖ ରାଜ୍ୟର କେତେକ ଲୋକ ପ୍ରବେଶ କରି ସେଠାକାର ପ୍ରଜାମାନଙ୍କୁ ମତାଇ ବିଦ୍ରୋହ ସୃଷ୍ଟି କଲେ । ପ୍ରଜାମାନଙ୍କ ବିଦ୍ରୋହ ଦମନ କରିବା ପାଇଁ ରାଜା ସ୍ୱୟଂ ସସୈନ୍ୟେ ସେଠାରେ ଉପସ୍ଥିତ ହେଲେ । ବିଦ୍ରୋହୀମାନେ ମଧ୍ୟ ପଡ଼ୋଶୀ ରାଜ୍ୟର ଲୋକଙ୍କ ସହାୟତାରେ ଯୁଦ୍ଧ ପାଇଁ ପୂର୍ବରୁ ପ୍ରସ୍ତୁତ ଥିଲେ । ଦୁଇ ପକ୍ଷରୁ ତୁମୁଳ ଯୁଦ୍ଧ ଆରମ୍ଭ ହେଲା । ରାଜା ବୀରତ୍ୱର ସହିତ ଲଢ଼ାଇ କରି ଶତ୍ରୁ ଦମନ କଲେ । କିନ୍ତୁ ଯୁଦ୍ଧ ମଝିରେ ହଠାତ୍ ରାଜାଙ୍କ ଶରୀର ଶରବିଦ୍ଧ ହେଲା ଓ ସେ ମୂର୍ଚ୍ଛା ହୋଇଗଲେ । ମୂର୍ଚ୍ଛିତ ରାଜାଙ୍କୁ ପୃଷ୍ଠରେ ଧାରଣ କରି ବୁଦ୍ଧିମାନ ଘୋଡ଼ା ଗୋପନରେ ରଣକ୍ଷେତ୍ରରୁ ଖସି ପଳାଇଲା । କ୍ରମେ ରାଜାଙ୍କ ଜ୍ଞାନ ଫେରି ଆସିଲା । ସେ ପୁଣି ସଳଖ ବସିଲେ । ନିଜ ଘୋଡ଼ା ଉପରେ ତାଙ୍କର ଅଗାଧ ବିଶ୍ୱାସ ଥିଲା । ସେ ତାଙ୍କୁ କୌଣସି ନା କୌଣସି ନିରାପଦ ଅଞ୍ଚଳକୁ ନେଇଯାଉଛି, ଏକଥା ସେ ଅନୁମାନ କରି ପାରିଲେ ।

ଆହତ ରାଜାଙ୍କୁ ଧରି ଘୋଡ଼ା ଯାଇ ଗୋଟିଏ ଦୂର ଗ୍ରାମରେ ପହଞ୍ଚିଲା । ସେତେବେଳେ ଗ୍ରାମବାସୀମାନେ ଗ୍ରାମ ସୀମାନ୍ତରେ ଠିଆ ହୋଇ କିଛି ଆଲୋଚନା କରୁଥିଲେ । ଜଣେ ସଶସ୍ତ୍ର ଯୋଦ୍ଧା ଘୋଡ଼ାରେ ଗ୍ରାମ ଭିତରକୁ ଆସୁଥିବାର ଦେଖି ସେମାନେ ଇତସ୍ତତଃ

ପଳାଇଗଲେ । କେବଳ ଜଣେ ଠିଆ ହୋଇ ରହିଲା । ଘୋଡ଼ାର ଗତି ସ୍ଥିର ହେବା ଉତ୍ତାରୁ ସେ ଯାଇ ରାଜାଙ୍କୁ ପଚାରିଲା, "ତମେ ଆମ ରାଜାଙ୍କ ପକ୍ଷର ଯୋଦ୍ଧା ନା ବିଦ୍ରୋହୀ ପକ୍ଷର ଯୋଦ୍ଧା ?"

"ମୁଁ ତମ ରାଜାଙ୍କ ପକ୍ଷର !" ଉତ୍ତର ଦେଲେ ରାଜା ।

ଲୋକଟି ତାହା ଶୁଣି ଖୁସି ହୋଇ ତାଙ୍କୁ ନିଜ ଘରକୁ ନେଇଗଲା । ତା' ନିର୍ଦ୍ଦେଶରେ ତାଂ ସ୍ତ୍ରୀ ରାଜାଙ୍କ କ୍ଷତ ଧୋଇଦେଇ ଔଷଧ ଲଗାଇ ଦେଲା । ଗ୍ରାମବାସୀ ଜଣକ ଘୋଡ଼ାର ତତ୍ତ୍ୱ ନେବାକୁ ମଧ୍ୟ ଭୁଲିଲା ନାହିଁ ।



ରାଜା ଏଡ଼େ ସତର୍କରେ କଥାବାର୍ତ୍ତା କରୁଥାନ୍ତି ଯେ ସେ ଯେ ଜଣେ ସାଧାରଣ ଯୋଦ୍ଧା ନୁହନ୍ତି, ସ୍ୱୟଂ ରାଜା, ଏକଥା ସେ ଗ୍ରାମବାସୀଟି ମୋଟେ ବୁଝିପାରୁ ନଥାଏ ।

ରାଜା ସେଠାରେ ଚାରିଦିନ ରହିଲେ । ଔଷଧ ସେବନ କରି ଓ ଭଲ ଭାବରେ ଖିଆପିଆ କରି ସେ ସୁସ୍ଥ ହେଲେ । ଇତି-ମଧ୍ୟରେ ତାଙ୍କ ସୈନ୍ୟମାନେ ବିଦ୍ରୋହ ଦମନ କଲେ ।

ରାଜା ଏ ସମ୍ବାଦ ପାଇଲେ । ସେ ଏଥର କାଶୀ ଫେରି ଯିବାକୁ ପ୍ରସ୍ତୁତ ହେଲେ । ବିଦାୟ ବେଳେ ସେ ଗ୍ରାମବାସୀଜଣକୁ କହିଲେ, "ମୋ ଘର କାଶୀରେ । ସ୍ତ୍ରୀ ଓ ଦୁଇ ପୁଅଙ୍କୁ ନେଇ ମୋର ପରିବାର । ରାଜପ୍ରାସାଦ ପାଖକୁ ଗଲେ ମୋ ଘର ଜଣା ପଡ଼ିଯିବ । ଆପଣ ପ୍ରାସାଦର ଦକ୍ଷିଣ ଦ୍ୱାର ଆଗରେ ଥିବା ପ୍ରହରୀକୁ ପଚାରିବେ— ମହାଶୟର କେଉଁଠି ରହନ୍ତି ? ତାହାହେଲେ ସେ ଆପଣଙ୍କୁ ମୋ ପାଖକୁ ନେଇଯିବେ । ମୋର ବିଶେଷ ଅନୁରୋଧ, ଆପଣ ନିଶ୍ଚୟ ଥରେ ମୋ ଘରକୁ ଆସିବେ ଏବଂ ମୋର ଅତିଥି ହୋଇ କିଛିଦିନ ରହିବେ ।"

ରାଜା ଏହାପରେ ସେ ଗ୍ରାମବାସୀଙ୍କୁ କାଶୀରେ ଅପେକ୍ଷା କରୁଥାନ୍ତି । ଅନେକ ଦିନ ବିତିଗଲା । କିନ୍ତୁ ସେ ଆସିଲେ ନାହିଁ । ଏଣେ ରାଜା କୌଣସି ମତେ ତାଙ୍କ ଋଣ ପରିଶୋଧ କରିବାକୁ ବ୍ୟାକୁଳ ହେଉଥାନ୍ତି । ସେ ମନ୍ତ୍ରୀଙ୍କୁ

ଏକଥା କହିବାରୁ ମନ୍ତ୍ରୀ ସେ ଗାଁ ଉପରେ ଗୋଟିଏ ନୂଆ କର ଧାର୍ଯ୍ୟ କଲେ । ତାଙ୍କର ଧାରଣା ହେଲା, ସେଭଳି ହେବା ଦ୍ବାରା ଲୋକଟି ସାହାଯ୍ୟ ପାଇବା ଆଶାରେ ଦିନେ ଆସି ପହଞ୍ଚିବ ।

କିନ୍ତୁ ତାହା ନ ହେବାରୁ ମନ୍ତ୍ରୀ ସେ ଗାଁ ଲୋକଙ୍କ ଉପରେ ପୁଣି କିଛି ନୂଆ କର ବସାଇ ଦେଲେ ।

ଦିନେ ସେ ଗ୍ରାମର ବରିଷ୍ଠ ଲୋକେ ରାଜାଙ୍କୁ ଆଶ୍ରୟ ଦେଇଥିବା ସେ ଗ୍ରାମବାସୀଙ୍କୁ ଭେଟି କହିଲେ, "ଆରେ ଭାଇ, ତମେ ପରା କହୁଥିଲ କାଶୀ ନଗରୀରେ କୌଣସି ଜଣେ ଯୋଦ୍ଧା ଅଛନ୍ତି ଏବଂ ସେ ତମର ମିତ୍ର ? ଦେଖୁଛ ଆମ ଗାଁ ଉପରେ କେମିତି କର ପରେ କର ବସି ଚାଲିଛି । ତମେ ଯାଇ ତମ ମିତ୍ରଙ୍କୁ କୁହ । ନହେଲେ ଆମେ ମଲୁଁ । ସେ ହୁଏତ ପ୍ରଭାବଶାଳୀ ହୋଇଥିବେ । କିଛି ନା କିଛି କରି ପାରିବେ ।"

"ହଁ, ମୋ ମିତ୍ର ପ୍ରଭାବଶାଳୀ ଲୋକ ବୋଲି ମୋର ଧାରଣା । ତେଲେ ସେ କିଛି କରିପାରିବେ । କିନ୍ତୁ ଖାଲି ହାତରେ ଯିବି କିପରି ? ତାଙ୍କର ସ୍ତ୍ରୀ ଓ ଦୁଇ ପୁଅ । କିଛି ଉପହାର ଧରି ଯିବା ଯିନା ସୁନ୍ଦର ହେବ!" ଗ୍ରାମବାସୀଟି କହିଲା ।

ଗ୍ରାମବାସୀମାନେ କିଛି ସାହାଯ୍ୟ କଲେ । ରାଜାଙ୍କୁ ଆତିଥ୍ୟ ଦେଇଥିବା ଲୋକଟିର ସ୍ତ୍ରୀ କିଛି ଖାଦ୍ୟଦ୍ରବ୍ୟ ତିଆରି କରିଦେଲା । ସେସବୁ ଧରି ଲୋକଟି କାଶୀ ଚାଲିଲା ।



କିଛିଦିନ ବାଟ ଚାଲି ଚାଲି ସେ କାଶୀ ନଗରୀରେ ପହଞ୍ଚିଲା ଓ ପ୍ରାସାଦ ସାମନାରେ ଯାଇ ଦକ୍ଷୀଣ ଦୁଆର ପାଖରେ ଥିବା ପ୍ରହରୀକୁ ପଚାରିଲା, "ବାବୁ, ମହାଷ୍ଟାରଙ୍କ ଘର କେଉଁଠି ତୁମେ କହି ପାରିବ? ତାଙ୍କ ପରିବାରରେ ତାଙ୍କ ସ୍ତ୍ରୀ ଓ ଦୁଇ ପୁଅ ଅଛନ୍ତି।"

ପ୍ରହରୀ ତ ଆଗରୁ ଜାଣିଥିଲା, ସେ ସଙ୍ଗେ ସଙ୍ଗେ ଲୋକଟିକୁ ଅନ୍ତଃପୁର ଭିତରକୁ ନେଇଗଲା। ରାଜା ଅତି ଆନନ୍ଦରେ ଲୋକଟିକୁ ସ୍ୱାଗତ କଲେ, ସେ ଆଣିଥିବା ସାଧାରଣ ଖାଦ୍ୟ ରାଣୀ ଓ ରାଜପୁତ୍ରଙ୍କୁ ରାଜା ଖୁଆଇଲେ। ଅନ୍ୟ ଉପହାରମାନ ମଧ୍ୟ ରାଜା ଆନନ୍ଦରେ ଗ୍ରହଣ କଲେ।

ରାଜା ତାଙ୍କ ଅତିଥିଙ୍କୁ ମୂଲ୍ୟବାନ ବେଶଭୂଷା ଉପହାର ଦେଲେ। ଯେତେବେଳେ ସେ ଜାଣିଲେ କି ଅତିଥି ନୂଆ କର ବିଷୟରେ ଅଭିଯୋଗ କରିବାକୁ ଆସିଛନ୍ତି, ସେ ସଙ୍ଗେ ସଙ୍ଗେ ମନ୍ତ୍ରୀଙ୍କୁ ଡକାଇ ସେସବୁ କର ରଦ୍ଦ କରିଦେବାକୁ ନିର୍ଦ୍ଦେଶ ଦେଲେ।

ସେତିକି ନୁହେଁ, ରାଜା ସାମନ୍ତ ଓ ଅମାତ୍ୟମାନଙ୍କର ସଭା ଡକାଇ ଘୋଷଣା କଲେ କି ସେ ଗ୍ରାମବାସୀ ତେଣିକି ତାଙ୍କ ରାଜ୍ୟର ଅର୍ଦ୍ଧେକ ଉପରେ ରାଜା ହେଲେ। କିନ୍ତୁ ଏଥିରେ ମନ୍ତ୍ରୀ ଓ ପ୍ରଧାନ ଅମାତ୍ୟମାନେ ସନ୍ତୁଷ୍ଟ ହେଲେ ନାହିଁ। ସାଧାରଣ ଜଣେ ଗ୍ରାମବାସୀକୁ ଅଧା ରାଜ୍ୟ ଦେଇଦେବା ସେମାନଙ୍କୁ ଅତ୍ୟନ୍ତ ବୋକାମି ବୋଲି ମନେ ହେଲା।



କିନ୍ତୁ ରାଜାଙ୍କୁ ପ୍ରତ୍ୟକ୍ଷ ଭାବରେ କିଛି କହିବା ଭଳି ସାହସ ସେମାନଙ୍କର ନଥିଲା । ସେମାନେ ଯାଇ ବଡ଼ ରାଜକୁମାରଙ୍କୁ କହିଲେ, "ଯୁବରାଜ ! ରାଜା ବଡ଼ ଖାମଖିଆଲି ଭାବରେ କାମ କରୁଛନ୍ତି । ଏପରି ଭାବରେ ଜଣେ ଅଜଣା ଅଶୁଣା ଲୋକଙ୍କୁ ଅଧାଅଧି ରାଜ୍ୟ ଦେଇଦେବାର କିଛି ମନେ ହୁଏ ? ଆପଣଙ୍କରହିଁ ଏଥିରେ କ୍ଷତି ହେଉଛି । ଆପଣ କିଛି କରନ୍ତୁ ।"

ରାଜକୁମାର ଯାଇ ରାଜାଙ୍କୁ କହିଲେ, "ପିତୃଦେବ ! ଆପଣ ଅଧା ରାଜ୍ୟ ଜଣେ ଗ୍ରାମବାସୀଙ୍କୁ ଏମିତି ଭାବରେ ଦେଇଦେବା କ'ଣ ସମୀଚିନ ହେଉଛି ?"

ରାଜା ସ୍ନେହଭରେ ରାଜକୁମାରଙ୍କୁ ଅନାଇ କହିଲେ, "ବାପା ! ଏ ପ୍ରଶ୍ନ ତୋର ହୋଇ ପାରେନା । ଏହା ଅନ୍ୟମାନେ ତୋତେ ଶିଖାଇଛନ୍ତି । ତୁ ସଭାରେହିଁ ମୋତେ ଏ ପ୍ରଶ୍ନ କରିବୁ ।"

ପରଦିନ ରାଜକୁମାର ତାହାହିଁ କଲେ । ରାଜା ଉତ୍ତର ଦେଲେ: "ଅପାତ୍ରକୁ ଦାନ ଦେବା ଯେପରି ଗର୍ହିତ, ସତ୍‌ପାତ୍ରକୁ ନଦେବା ସେହିପରି ଗର୍ହିତ । ଏ ଗ୍ରାମବାସୀ ଜାଣି ନଥିଲେ କି ମୁଁ ରାଜା । ତଥାପି ସେ ମୋର ଯେପରି ପରିଚର୍ଯ୍ୟା କଲେ, ତାହା ନକରି ଥିଲେ ମୋ ପ୍ରାଣ ଯାଇଥାନ୍ତା । ଜୀବନ ତୁଳନାରେ ଅଧା ରାଜ୍ୟ କ'ଣ ବଡ଼ କଥା ? ତା'ପରେ ଦେଖନ୍ତୁ—ଇଏ ମୋର ନିମନ୍ତ୍ରଣ ସତ୍ତ୍ୱେ ରାଜଧାନୀକୁ ଆସୁ ନଥିଲେ । ଯେତେବେଳେ ସେ ଆସିଲେ, ସେତେବେଳେ ଗ୍ରାମର ସ୍ୱାର୍ଥ ଦୃଷ୍ଟିରୁ ଆସିଲେ । ଅଧା ରାଜ୍ୟ ପାଇଁ ଏହାଙ୍କଠାରୁ ଯୋଗ୍ୟ ବ୍ୟକ୍ତି ଆଉ କିଏ ହୋଇ ପାରନ୍ତି ?"

ରାଜକୁମାର ଏ ଉତ୍ତର ଶୁଣି ଖୁସି ହେଲେ, ତାଙ୍କୁ ଶିଖାଇଥିବା ଲୋକେ ଲଜ୍ଜାରେ ଶିର ଅବନତ କଲେ ।





ଭାରତ-କାହାଣୀ

# ମୋଗଲ ସାମ୍ରାଜ୍ୟର ସୂର୍ଯ୍ୟାସ୍ତ

ମରହଟ୍ଟାମାନଙ୍କୁ ଦମନ କରିବା ନିମନ୍ତେ ଆଓରଂଜେବ୍ ଛବିଶ ବର୍ଷ କାଳ ଦାକ୍ଷିଣାତ୍ୟରେ କଟାଇଲେ। ଶାସନରେ ନାମ ବିଭ୍ରାଟ ଦେଖାଦେଲା। ତାଙ୍କର ଜଣେ ପୁଅ ବିଦ୍ରୋହ କରି ପାରସ୍ୟକୁ ପଳାଇଗଲେ। ହତାଶ ଆଓରଂଜେବ୍ ୧୭୦୭ ରେ ପ୍ରାଣ ତ୍ୟାଗ କଲେ।

ସଙ୍ଗେ ସଙ୍ଗେ ତାଙ୍କ ପୁଅମାନଙ୍କ ଭିତରେ ଗଦି ପାଇଁ ଗଣ୍ଡଗୋଳ ଲାଗିଗଲା। ଜ୍ୟେଷ୍ଠପୁତ୍ର ମୁଆଜ୍ଜାମ୍ ତାଙ୍କର ଦୁଇ ସାନଭାଇଙ୍କୁ ହତ୍ୟା କରି ଗାଦି ଅଧିକାର କଲେ ଓ ବାହାଦୁର ଶାହ୍ ନାମ ନେଲେ। ସେ ୧୭୧୨ ରେ ମଲେ। ତାଙ୍କ ଜ୍ୟେଷ୍ଠପୁତ୍ର ଜାହାନ୍ଦର୍ ଶାହ୍ ନିଜର ତିନି ସାନଭାଇଙ୍କୁ ହତ୍ୟା କରି ନିଜକୁ ସମ୍ରାଟ ଘୋଷଣା କଲେ।







ଜାହାନ୍ଦର ମାତ୍ର ବର୍ଷଟିଏ ଗଦିରେ ବସିଥିଲେ। ତାଙ୍କ ପୁତୁରା ଫାରୁକ୍ ସିଆର୍ ତାଙ୍କୁ ହତ୍ୟା କରି ଗାଦି ମାଡି ବସିଲେ। ସୈୟଦ୍ ଭ୍ରାତୃଦ୍ୱୟ ନାମରେ କୁଖ୍ୟାତ ଦୁଇଭାଇ କ୍ରମେ ସବୁ କ୍ଷମତା ଆୟତ୍ତ କଲେ ଓ ନିଜ ଇଚ୍ଛାନୁସାରେ ଜଣକୁ ହତ୍ୟା କରାଇ ଆଉ ଜଣକୁ 'ସମ୍ରାଟ' ବନାଇଲେ। ଥର ଥର କରି ସେମାନେ ତିନିଥର ଏହା କଲେ।



ଅବଶେଷରେ ସେମାନେ ଗାଦିରେ ବସାଇଥିବା ମହମ୍ମଦଶାହ୍ ନାମକ 'ସମ୍ରାଟ' ସେମାନଙ୍କୁ ମାରି ପକାଇଲେ । ସେତେବେଳକୁ ଦିଲ୍ଲିର ବିଶୃଙ୍ଖଳ ଅବସ୍ଥାରେ ସମ୍ବାଦ ପାଇ ପାରସ୍ୟର ସମ୍ରାଟ ନାଦିରଶାହ୍ ଦିଲ୍ଲି ଅଭିଯାନ ପାଇଁ ପ୍ରସ୍ତୁତ ହେଉଥାନ୍ତି । ଅଚିରେ ସେ ବିରାଟ ସୈନ୍ୟଦଳ ଓ ଗୁଡ଼ାଏ ଲୋକ କର୍ମଗୃହୀଙ୍କୁ ଧରି ଦିଲ୍ଲି ଭିତରକୁ ମାଡି ଆସିଲେ ।

ଏ ପ୍ରବଳ ଶତ୍ରୁର ଗତିରୋଧ କରିବାର ଶକ୍ତି ମହମ୍ମଦ୍ ଶାହ୍‌ଙ୍କର ନଥିଲା । ସେ ରାଜପୁତ୍ ମାନଙ୍କର ସାହାଯ୍ୟ ଲୋଡିଥିଲେ ଭଲ କରିଥାନ୍ତେ । କିନ୍ତୁ ତାହା ବି ସେ କଲେ ନାହିଁ । ଦୁର୍ବଳ ମୋଗଲ ସୈନ୍ୟବାହିନୀକୁ ଅକ୍ଲେଶରେ ହଟାଇଦେଇ ନାଦିରଶାହ୍ ଦିଲ୍ଲିରେ ପ୍ରବେଶ କଲେ । ମହମ୍ମଦ୍ ଶାହ୍ ତାଙ୍କୁ ସ୍ୱାଗତ କରିବାର ଅଭିନୟ କଲେ ।





ନାଦିର୍ ଶାହ୍ ଦିଲ୍ଲିରେ ମଉଜ୍ କରୁଥାନ୍ତି । ତାଙ୍କ ସୈନ୍ୟମାନେ ଉଦ୍ଧତ ଭାବରେବୁଲୁଥାନ୍ତି । ହଠାତ୍ ନାଦିର୍-ଶାହ୍ ମରିଗଲେଣି ବୋଲି ଗୋଟାଏ ଗୁଜବ୍ ପ୍ରଚାର ହୋଇଗଲା ! ଦିଲ୍ଲିର ଲୋକେ ଖୁସି ହୋଇଗଲେ । କେତେ-ଜଣ ପାରସ୍ୟ ସୈନ୍ୟଙ୍କ ସାଥିରେ କେତେକ ଦିଲ୍ଲିବାସୀଙ୍କର ଝଗଡା ହେଲା । ପାରସ୍ୟ ସୈନ୍ୟଙ୍କୁ ସେମାନେ ମାରିଦେଲେ ।

ନାଦର୍ ଶାହ୍ ଦିଲ୍ଲି ନଗରୀର ଜନସାଧାରଣଙ୍କୁ ନିର୍ମମ ଭାବରେ ହତ୍ୟା କରିବା ପାଇଁ, ସେମାନଙ୍କ ଘରଦ୍ୱାର ଜଳାଇ ଦେବାପାଇଁ ଓ ସମସ୍ତ ଲୁଣ୍ଠନ କରିବା ପାଇଁ ନିଜ ସୈନ୍ୟବାହିନୀକୁ ଆଦେଶ ଦେଲେ । ଗୋଟିଏ ଦିନ ଭିତରେ ତିରିଶ ହଜାର ନରନାରୀ ଓ ଶିଶୁ ନିହତ ହେଲେ । ଏଭଳି ନରହତ୍ୟା ଦିଲ୍ଲିର ଇତିହାସରେ କେବେ ଘଟି ନଥିଲା । ଅମାପ ସମ୍ପଦ ଲୁଟ୍ ହେଲା ।





ସୁନ୍ଦର ସୁନ୍ଦର ଇମାରତ୍ ଓ ବଜାରମାନଙ୍କୁ ସେମାନେ ନିଆଁ ଲଗାଇ ଧ୍ୱଂସ କଲେ । ଗୋଟିଏ ପରେ ଗୋଟିଏ ଅଟ୍ଟାଳିକା ଧୂଳିସାତ୍ ହେଲା । ବାତାବରଣରେ ଘୋର ଆତଙ୍କ ଘୋଟି ରହିଲା । ସେ ବିଦେଶୀ ସୈନ୍ୟମାନଙ୍କ ଆଗରେ ଯିଏ ପଡ଼ିଲା ସିଏ ମଲା । ସୁରମ୍ୟ ଦିଲ୍ଲି ନଗରୀ ପ୍ରେତପୁରୀରେ ପରିଣତ ହେଲା ।

ନାଦିରଶାହ୍ ପ୍ରଚୁର ସୁନା, ହୀରା ଓ ମୂଲ୍ୟବାନ ବସ୍ତୁ ଛଡ଼ା ତିରିଶ କୋଟି ଟଙ୍କା ଧରି ପ୍ରତ୍ୟାବର୍ତ୍ତନ ପାଇଁ ପ୍ରସ୍ତୁତ ହେଲେ । ଶାହ୍ ଜାହାନ୍‌ଙ୍କ ନିର୍ମିତ ବିଖ୍ୟାତ ମୟୂର ସିଂହାସନ ମଧ୍ୟ ସେ ନେଇଗଲେ । ଏସବୁ ଛଡ଼ା ନେଇଗଲେ ଏକ ହଜାର ହାତୀ, ସାତହଜାର ଘୋଡ଼ା, ଦଶହଜାର ଓଟ ଏବଂ ଅନେକ ଗୁଣୀ ମିସ୍ତ୍ରୀ ।





ପ୍ରସିଦ୍ଧ ହୀରା କୋହିନୂର କଥା ନାଦିର୍‌ଶାହ୍‌ ଶୁଣିଥାନ୍ତି । ସେ ତାକୁ ସର୍ବତ୍ର ଖୋଜିଲେ । ମୋଗଲ୍‌ ପ୍ରାସାଦର ସବୁ ଅନ୍ଧିସନ୍ଧି ଖାନ୍‌ତଲାସ୍‌ ହେଲା । ଶେଷକୁ ଜଣେ ଚର ସେ ବସ୍ତୁ କେଉଁଠି ଅଛି, ସେକଥା ନାଦିରଶାହ୍‌ଙ୍କୁ ଗୋପନରେ କହିଦେଲା । ମୁହମ୍ମଦଶାହ୍‌ ତାକୁ ନିଜ ପଗଡ଼ି ଭିତରେ ଲୁଚାଇଥାନ୍ତି ।

ନାଦିରଶାହ୍‌ ବିଦାୟ ବେଳେ ମୁହମ୍ମଦ-ଶାହ୍‌ଙ୍କୁ କହିଲେ, "ବନ୍ଧୁତାର ସ୍ମୃତି ଚିହ୍ନ ରୂପେ ଆମେ ପଗଡ଼ି ଅଦଳବଦଳ କରିବା ଚାଲ !" ଏହା କହି ସେ ମୁହମ୍ମଦଶାହ୍‌ଙ୍କର ଅମୂଲ୍ୟ ପଗଡ଼ିଟି କାଢି ନେଇ ନିଜେ ପିନ୍ଧିଲେ ଓ ନିଜର ସାଧାରଣ ପଗଡ଼ିଟି ତାଙ୍କ ମୁଣ୍ଡରେ ଥୋଇଦେଲେ ।





ନାଦିରଶାହ୍‌ ଦିଲ୍ଲୀ ନଗରୀକୁ ରକ୍ତାକ୍ତ ଓ ସର୍ବସ୍ୱାନ୍ତ କରିଦେଇ ଗଲେ । ମୋଗଲ ସାମ୍ରାଜ୍ୟ ଭୁଷୁଡ଼ି ପଡ଼ିଲା । ଇତିମଧ୍ୟରେ ଦିଗନ୍ତରେ ନୂତନ ଶକ୍ତିମାନଙ୍କର ଅଭ୍ୟୁଦୟ ହେଉଥାଏ । ଫରାସୀ ଓ ଇଂରେଜ ବଣିକମାନେ ଭାରତ ଭୂଇଁକୁ ଐଶ୍ୱର୍ଯ୍ୟର ଖଣି ମନେ କରି ଲୋଭାତୁର ଭାବରେ ଆଗେଇ ଆସୁଥାନ୍ତି ।

# ମହାଜନଙ୍କ ବୈରାଗ୍ୟ

ଚନ୍ଦନପୁରରେ ଜଣେ ବିଶିଷ୍ଟ ମହାଜନ ଥିଲେ। ନାମ ଚନ୍ଦ୍ରଭୂଷଣ। ସେ ତାଙ୍କ କାରବାରରେ ଧୁରନ୍ଧର ଥିଲେ, କିନ୍ତୁ ସେ ଅଳ୍ପ ବୟସରୁ କାଲ ହୋଇଯାଇଥିଲେ।

ପରେ ସେ ଖବର ପାଇଲେ ଯେ ସେଠାରୁ ଦଶମାଇଲ ଦୂରବର୍ତ୍ତୀ ଜୀବନଘାଟି ଗ୍ରାମକୁ ଜଣେ ସାଧୁ ଆସିଛନ୍ତି। ସେ ଦେଉଥିବା ଔଷଧ ଦ୍ୱାରା ଅନେକ ଦୁରାରୋଗ୍ୟ ବ୍ୟାଧି ଭଲ ହୋଇ ଯାଉଛି।

ମହାଜନ ଯାଇ ସାଧୁଙ୍କ ପାଖରେ ପହଞ୍ଚି ନିଜ ଅସୁବିଧା କଥା କହିଲେ। ସାଧୁ ଖଣ୍ଡିଏ କାଗଜରେ ଲେଖିଦେଲେ, "ବାପା, ତମେ କାଲ ହେଲ ତ କ'ଣ ହେଲା, ତମର କାରବାର ତ ଭଲ ଚାଲିଛି। ଶ୍ରବଣଶକ୍ତି ପାଇ ଅଧିକା କ'ଣ ହେବ?"

କିନ୍ତୁ ମହାଜନ ଜିଗର କରିବାରୁ ସାଧୁ ଔଷଧ ଦେଲେ। ଔଷଧ ସେବନ କରି ଖୁସି ହୋଇ ମହାଜନ ଚାଲିଗଲେ।

ତିନିଦିନ ପରେ ମହାଜନ ଫେରି ଆସି ସାଧୁଙ୍କ ପାଖରେ ପହଞ୍ଚିଲେ।

"କହୋ? ଶୁଣି ପାରୁଛଟି?" ସାଧୁ ପଚାରିଲେ।

"ଆଜ୍ଞା! ମୁଁ ଶୁଣି ପାରୁଛି, କିନ୍ତୁ ଲୋକେ ତ ଜାଣି ନାହାନ୍ତି ଯେ ମୁଁ ଶୁଣି ପାରୁଛି! ସେମାନେ ମୋଠୁଁ ଟଙ୍କା ନେବାବେଳେ ବା ମୋତେ ସୁଧ ଦେବାବେଳେ ମୋ ବିଷୟରେ ପରସ୍ପର ଯାହା କୁହାକୁହି ହେଉଛନ୍ତି, ସେସବୁ ଶୁଣି ମୋର ଖାଲି ମୋ ବେପାର ପ୍ରତି ନୁହେଁ, ଜୀବନ ପ୍ରତି ବିତୃଷ୍ଣା ଆସି ଯାଇଛି। ମୁଁ ଆପଣଙ୍କ ସାଥିରେ ରହିବି। ପୁଅକୁ ବେପାର ବୁଝାଇଦେଇ ଆସିଛି!" ମହାଜନ କହିଲେ।

ସାଧୁ ହସିଲେ।





# ପର୍ଯ୍ୟବେକ୍ଷକ

ପୁରନ୍ଦର ନଗରୀରେ ଥିଲେ ଚନ୍ଦ୍ରଶେଖର ନାମକ ବ୍ୟବସାୟୀ । ଦେଶ ବିଦେଶରୁ ତାଙ୍କ ପାଖକୁ ଅନେକ ମାଲପତ୍ର ଆସୁଥିଲା । ବନ୍ଦର ପାଖରେ ଥିଲା ତାଙ୍କର ବିରାଟ ଗୋଦାମ ଘର । ସେ ଗୋଦାମରୁ ଜିନିଷପତ୍ର ଅନ୍ୟ ବ୍ୟବସାୟୀମାନେ ଆସି ନେଇ ଯାଉଥିଲେ ।

ଥରେ ଚନ୍ଦ୍ରଶେଖର ଲକ୍ଷ୍ୟ କଲେ, ଗୋଦାମରେ ଜମା ରହୁଥିବା ଜିନିଷପତ୍ରର ଠିକ୍ ହିସାବ ରହି ପାରୁନାହିଁ । ଅନେକ ଗୋଳମାଳ ହେଉଛି । କାରଣ ତାଙ୍କ ପାଖରେ ପୂର୍ବରୁ କାମ କରୁଥିବା ଜଣେ ଦକ୍ଷ ତତ୍ତ୍ୱାବଧାରକ ବହୁଦିନ ପରେ ଅବସର ନେଇ ଚାଲି ଯାଇଥିଲେ । ସେ ଚାଲିଯିବା ପରେ ପରେ ଧୀରେ ଧୀରେ ବିଭ୍ରାଟ ହେବାର ଦେଖାଗଲା ।

ଚନ୍ଦ୍ରଶେଖରଙ୍କ ପାଖରେ ଅନ୍ୟ ଯେଉଁ କର୍ମଚାରୀମାନେ ଥିଲେ, ସେମାନେ କେହି ବିଶେଷ ଯୋଗ୍ୟ ନଥିଲେ । ଜଣେ ଲେଖାପଢ଼ା ଜାଣିଥିବା ବୁଦ୍ଧିମାନ ଲୋକକୁ ସହକାରୀ ଭାବରେ ନ ରଖିଲେ ନଚଳେ ବୋଲି ଚନ୍ଦ୍ରଶେଖର ହୃଦୟଙ୍ଗମ କଲେ ।

ଚନ୍ଦ୍ରଶେଖର ତାଙ୍କର ଜଣେ ବନ୍ଧୁ ଶ୍ରୀଧରଙ୍କୁ କହିଲେ, "ଜଣେ ଯୋଗ୍ୟ ସହକାରୀ ମୋତେ ମିଳନ୍ତା ନାହିଁ ?"

ଶ୍ରୀଧର କହିଲେ, "ମୁଁ ତମ ପାଖକୁ ତିନିଜଣ ପ୍ରାର୍ଥୀଙ୍କୁ ପଠାଇଦେବି । ତମେ ଜଣକୁ ମନୋନୀତ କରିବ ।"

"ବେଶ୍ ଭଲ କଥା ।" ଚନ୍ଦ୍ରଶେଖର କହିଲେ ।

ପରଦିନ ଶ୍ରୀଧରଙ୍କଠାରୁ ତିନିଜଣ ଯୁବକ ଆସି ଚନ୍ଦ୍ରଶେଖରଙ୍କୁ ଦେଖା କଲେ ।

ବାଣୀନାଥ

ଚନ୍ଦ୍ରଶେଖର ଜଣଙ୍କୁ ନେଇଗଲେ ତାଙ୍କ ଗୋଦାମ ଘରକୁ । ଗୋଦାମ ଆଗରେ ଅନେକ ଗୁଡ଼ଏ କାଠ ବାକ୍ସ ଠୁଳ ହୋଇଥାଏ ।

"ଏସବୁ ପେଟି ନାମପୁରରୁ ନୌକାରେ ଆସିଛି । ଯିଏ ପଠାଇଛନ୍ତି, ତାଙ୍କର ଚାରିଜଣ ମୂଲିଆ ବି ସାଙ୍ଗରେ ଆସିଛନ୍ତି । ସେମାନେ ଏଗୁଡ଼ିକ ଗୋଦାମ ଘର ଭିତରକୁ ବୋହି ନେଇଯିବେ । ଘର ଭିତରେ ଆମର ଜଣେ ମୂଲିଆ ଅଛି । ସେ ଏସବୁ ସଜାଇ ରଖିବ । ତମେ ଏତିକି ଲକ୍ଷ୍ୟ କରିବ ଓ ସମୁଦାୟ କେତେ ପେଟି ଘର ଭିତରେ ରହିଲା, ତାର ହିସାବ ନେଇ ମୋତେ ଦେବ । ଏଥିରେ ଘିଅ ତମ୍ବା ଜିନିଷମାନ ଅଛି ।" ଏହା କହି ଚନ୍ଦ୍ରଶେଖର ବସାକୁ ଚାଲିଗଲେ ।

ଦୁଇଘଣ୍ଟା ପରେ ଯୁବକଟି ତାଙ୍କ ପାଖକୁ ଯାଇ କହିଲା, "ଆଜ୍ଞା, ଶହେ ଦଶଟି ପେଟି ଆସିଛି ।"

"ଆଉ କିଛି କହିବାର ଅଛି ?" ପଚାରିଲେ ଚନ୍ଦ୍ରଶେଖର ।

"ନା ଆଜ୍ଞା ।"

"ବେଶ, ଯାଅ । ପରେ ଚାକିରି କଥା ଦେଖିବା ।"

ଏହାପରେ ଚନ୍ଦ୍ରଶେଖର ଦ୍ୱିତୀୟ ଯୁବକକୁ ନେଇ ଯାଇ ଗୋଦାମ ଘର ଦେଖାଇଲେ ସେତେବେଳେ ବି ସେମିତି ବାକ୍ସମାନ ବାହାରେ ଜମା ହୋଇଥିଲା । ପ୍ରଥମ ଯୁବକକୁ



ସେ ଯାହା କରିବାକୁ କହିଥିଲେ, ଦ୍ୱିତୀୟ ଯୁବକକୁ ଅବିକଳ ସେଇଆ କହିଲେ ।

ଦୁଇଘଣ୍ଟା ପରେ ଦ୍ୱିତୀୟ ଯୁବକ ଆସି କହିଲା, "ଆଜ୍ଞା, ଶହେ ଦଶ ପେଟି ଅଛି । ତେବେ···"

"କ'ଣ କହୁଛ ?"

"ଅନୁମତି ଦେଲେ କହିବି, ଆପଣଙ୍କ ପାଖକୁ ଯିଏ ଏସବୁ ପଠାଇଛନ୍ତି, ସିଏ କିଛି କୌଶଳ କରୁ ନାହାନ୍ତି ତ? ଆପଣ ତ କହିଲେ ସେସବୁ ପେଟିରେ ଓଜନିଆ ତମ୍ବା ଜିନିଷ ଅଛି । ମୁଁ କିନ୍ତୁ ଲକ୍ଷ୍ୟ କଲି, ସେସବୁ ଜିନିଷ ଆଣିଥିବା ମୂଲିଆମାନେ ସେସବୁ ଗୋଦାମ ଭିତରକୁ ନେଲାବେଳେ ବହୁତ ଧିରେ ଧିରେ ନେଉଛନ୍ତି, ଯେମିତିକି ସେମାନଙ୍କୁ ବହୁତ କଷ୍ଟ ହେଉଛି । କିନ୍ତୁ ଘର ଭିତରେ ଥିବା ଆପଣଙ୍କ ଲୋକଟି ଯେତେବେଳେ ସେସବୁ ସଜାଇ ରଖୁଛି, ସିଏ ଅକ୍ଳେଶରେ ପେଟିମାନ ଉଠାଇ ନେଉଛି । ତାହା ଦେଖି ମୁଁ ନିଜେ କେତୋଟି ପେଟି ଉଠାପକା କରି ଦେଖିଲି ସେସବୁ ବାସ୍ତବିକ ମୋଟେ ଓଜନିଆ ନୁହନ୍ତି ।" ଦ୍ୱିତୀୟ ଯୁବକ କହିଲା ।

"ସାବାସ୍ !" କହି ଚନ୍ଦ୍ରଶେଖର ତା' ପିଠି ଥାପୁଡ଼େଇ ଦେଲେ ଓ ପୁଣି କହିଲେ, "ସେମାନେ ସମସ୍ତେ ଆମରି ଲୋକ । ତମେ କେତେଦୂର ଏସବୁ ଲକ୍ଷ୍ୟ କରୁଛ, ତାହାହିଁ ବୁଝିବା ମୋର ଉଦ୍ଦେଶ୍ୟ ଥିଲା । ସେମାନଙ୍କୁ ସେପରି କରିବାକୁ ମୁଁ ନିର୍ଦ୍ଦେଶ ଦେଇଥିଲି । ତମେ ଆଜିଠାରୁ କାମରେ ଯୋଗ ଦେଇଛ ବୋଲି ଧରିନେଲି ।"

ଯୁବକଟି ଆନନ୍ଦିତ ହେଲା । କ୍ରମେ ସେ ନିଜର ବୁଦ୍ଧିମତ୍ତା ଓ ବିବେକ ଦ୍ୱାରା ଚନ୍ଦ୍ରଶେଖରଙ୍କ ବ୍ୟବସାୟକୁ ଏପରି ଭାବରେ ପରିଚାଳନା କଲା ଯେ ଚନ୍ଦ୍ରଶେଖର ତାକୁ ନିଜର ଜଣେ ଅଂଶୀଦାର ବନାଇ ଦେଲେ ।





# ସୁଧୀରର ଯାଦୁବିଦ୍ୟା

ସୁଧୀର ଘରକୁ ଫେରୁଥାଏ ସିନା, କିନ୍ତୁ ମନରେ ସୁଖ ନଥାଏ । ତା' ସ୍ତ୍ରୀ ରମା ଦୁଇଦିନ ହେଲା ଗୋଟାଏ ପାଚିଲା ପଣସ ଆଣିବାକୁ ତାକୁ ବରାବର କହୁଥାଏ । କିନ୍ତୁ ସେ ପାଉ ନଥାଏ । ବଜାରରେ ଠାଏଁ ଥିଲା, କିନ୍ତୁ ଦୋକାନୀ ଅତ୍ୟନ୍ତ ବଢ଼ା ଦାମ ହାଙ୍କିବାରୁ ସେ ପଛଘୁଞ୍ଚା ଦେଇଥିଲା ।

ସେ ସାଧାରଣ କିରାଣୀଟିଏ । ହିସାବ କରି ତାକୁ ଖର୍ଚ୍ଚ କରିବାକୁ ପଡ଼େ । ଦୋକାନୀ ଯାହା ମନ ତାହା ଦାମ କହିଲେ ଦେଇ ପକାଇବା ତା' ପକ୍ଷରେ କିପରି ସମ୍ଭବ ହୁଅନ୍ତା ?

ସେ ଘରେ ପହଞ୍ଚିବା ବେଳକୁ ରମା ଦୁଆର ପାଖରେ ଠିଆ ହୋଇଥିଲା ।

"କ'ଣ, ପଣସ ମିଳିଲା ନାହିଁ ?" ସେ ହତାଶ ହୋଇ ପଚାରିଲା । ସୁଧୀରକୁ ତା' ଜେଜେମା କହିଦେଇଥିଲେ, "ରମାର ପିଲା ହେବାର ଅଛି । ଏତେବେଳେ ସେ ଯାହା ଖାଇବାକୁ ଇଚ୍ଛା କରିବ, ତାହା ଆଣିଦେବା ତୋର କର୍ତ୍ତବ୍ୟ ।" ସୁଧୀର ସେ କଥା ମନେ ପକାଇବା ସଙ୍ଗେ ସଙ୍ଗେ ରମାର ହତାଶା ଲକ୍ଷ୍ୟ କରି କ'ଣ କହିବ ଠିକ୍ କରି ପାରିଲା ନାହିଁ ।

ଦୋକାନୀ ଯେତେ ଅଧିକ ଦାମ କହିଲେ ମଧ୍ୟ ପଣସଟି ସେ କିଣିବା ଉଚିତ ଥିଲା ବୋଲି ବର୍ତ୍ତମାନ ମନେ ହେବାରୁ ସେ ଅନୁତାପ କଲା ।

"କ'ଣ ଆଉ କରାଯିବ! ଆଗାମୀ କାଲି ଭଲ ପଣସ ମିଳିବ ବୋଲି ଦୋକାନୀମାନେ କହିଛନ୍ତି । କାଲି ଜରୁର୍ ଆଣିବି, ଦାମ ଯେତେ ହେଲେ ହେଉ । ଥୟଧର ।" ସେ କୌଣସି ମତେ କହିଲା ।

ରମା ଅତି ସରଳ ସ୍ୱଭାବର ଝିଅ । ସେ ଖୁସି ହୋଇଗଲା । ତା' ଖୁସି ଦେଖି ସୁଧୀର

କରୁଣା



ସ୍ଥିର କଲା, ସେପରି ହେଲେ ଯଥା ଶୀଘ୍ର ସେ ପଣସ ଆଣିବ।

ପରଦିନ ସେ ତା' କାମ ଶେଷ କରି ଦିନ ପାଞ୍ଚଟା ବେଳକୁ ବଜାରକୁ ଯାଇ ଦେଖିବା ବେଳକୁ ପୂର୍ବଦିନ ଚଢ଼ା ଦାମ ବତାଇଥିବା ଦୋକାନୀ ପାଖରେ ବି ପଣସ ନାହିଁ।

ସେ ସେଠାରୁ କିଛି ଦୂରରେ ଥିବା ଆଉ ଗୋଟାଏ ବଜାରକୁ ଗଲା। ସେଠି ପଣସ ଥିଲା, କିନ୍ତୁ କଞ୍ଚା; ତାହା ତରକାରି ପାଇଁ, ଖାଲି ଖାଇବା ପାଇଁ ନୁହେଁ।

ସେ ସହରରେ ସୁଧୀର ନୂଆ। କାହାକୁ ଏବେ ପଣସ କଥା ପଚାରିବ? ସେ ମନ-ଦୁଃଖରେ ବାଟ ଚାଲିଛି, ହଠାତ୍ ଜଣକ ବଗିଚା ଉପରେ ତା' ଆଖି ପଡ଼ିଲା। ତହିଁ ଭିତରେ ଥିଲା ଗୋଟାଏ ବଡ଼ ପଣସ ଗଛ। ସେଥିରେ ଅନ୍ତତଃ ଯୋଡ଼ିଏ ତିନୋଟି ପଣସ ପାଚିକରି ରହିଥିଲେ ବୋଲି ବାସ୍ନାରୁ ବୁଝିହେଉଥିଲା।

ସୁଧୀର ସଙ୍କୋଚ କଟାଇ ଫାଟକ ଖୋଲି ପଶିଲା। ବଗିଚାକୁ ଲାଗି ଗୋଟିଏ ଘର। ସେ ଦୁଆରେ ଶବ୍ଦ ଦେବାରୁ ଜଣେ ମହିଳା କବାଟ ଖୋଲିଲେ। ସେ କହିଲା, "ଆଜ୍ଞା, ମୋର ଗୋଟାଏ ପାଚିଲା ପଣସ ନିହାତି ଦରକାର। ବିକିବେ?"

"କ'ଣ ହେଲା? ଆମେ ପଣସ ବିକିବୁଁ? କେଉଁ ଦୁଃଖରେ? ତମକୁ ହାଟ ବଜାର ମିଳିଲା ନାହିଁ ଯେ ପଣସ କିଣି ଆମକୁ ସାହାଯ୍ୟ କରିବାକୁ ଚାଲି ଆସିଲ?" ଏହା କହି ମହିଳା କବାଟ ବନ୍ଦ କରିଦେଲେ।

"ଆଜ୍ଞା, ଶୁଣନ୍ତୁ। ମୋର ବିଶେଷ ପ୍ରୟୋଜନ ଅଛି। ଯଦି ନ ବିକିବେ, ତେବେ ମୋତେ ଧାର ଦିଅନ୍ତୁ। ମୁଁ କେଇଦିନ ଭିତରେ ଆଣି ଆପଣଙ୍କୁ ଦେଇଯିବି। ବଜାରରେ ପାଚିଲା ପଣସ ସତରେ ନାହିଁ। ବିଶ୍ୱାସ କରନ୍ତୁ।" ସୁଧୀର କବାଟ ଏପଟେ ଠିଆ ହୋଇ ଉତ୍କଣ୍ଠିତ ସ୍ୱରରେ କହିଲା। ସେ ଭାବିଥିଲା, ଏଥର ମହିଳା ଅନ୍ତତଃ ତା ପ୍ରତି ସହାନୁଭୂତି ଦେଖାଇବେ।

କିନ୍ତୁ ଭିତରୁ ମହିଳା ଜଣକ କହିବାର ତା' କାନରେ ପଡ଼ିଲା, "ଗୋଟାଏ ପାଗଳ କମ୍ପା

ବଦ୍‌ମାସ ଲୋକ ମୋ ସାଙ୍ଗରେ ଲଗାଉଛି । ପାହାରେ ପାଇଲେ ମଜା ବୁଝିବ !"

ସୁଧୀରକୁ ଯେତିକି ଅପମାନ ଲାଗିଲା, ସେତିକି ରାଗ ଲାଗିଲା । ସେ ସେଇ ମୁହୂର୍ତ୍ତରେ ଉତ୍ତେଜନା ବଶତଃ ସ୍ଥିର କଲା, "ରାତିରେ ପାଚିଲା ପଣସଟିଏ ଛଡ଼ାଇ ନେଇଯିବ ।"

ସେ ଘରେ ପହଞ୍ଚି ରମାକୁ କହିଲା, "ପଣସ କିଣିଲି ଯେ, ଜଣେ ବନ୍ଧୁ ଘରେ ଥୋଇଦେଇ ଆସିଲି । ଥଳି ନଥିଲା ବୋଲି ଆଣି ପାରିଲି ନାହିଁ । ଆଜି ରାତିରେ ତା' ଘରେ ଖାଇବାର ଅଛି । ଖାଇସାରି ଯଣସ ଧରି ଆସିବ । ରାତି ବେଶି ହେବ । ଚିନ୍ତା କରିବ ନାହିଁ ।"

ରାତିରେ ସେ ଥଳି ଧରି ବାହାରିଗଲା । ଖାଇଲା ଗୋଟାଏ ଭଟିଘରେ । ରାତି ଅଧା ବେଳକୁ ସେ ଯାଇ ସେ ପଣସ ଗଛ ପାଖରେ ପହଞ୍ଚିଲା ।

ସବୁ ଶୁନ୍‌ଶାନ୍ । ସେ ଧିରେ ଧିରେ ପାଚେରି ଟପି ହତା ଭିତରେ ପଶିଲା । ପଣସ ଗଛ ପାଖକୁ ଯାଇ ପାଚିଲା ପଣସ ବାରି ତାକୁ ତୋଳି ଥଳିରେ ଭର୍ତ୍ତି କରି ସାରିବା ପରେ ହଠାତ୍ ଦେଖିଲା, ଜଣେ ଲୋକ ଅଳ୍ପ ଦୂରରେ ବସି ଗାତ ଖୋଳୁଛନ୍ତି । ତାଙ୍କ ଆଖି ସୁଧୀର ଉପରେ ପଡ଼ିସାରିଛି ଜାଣି ସୁଧୀରର ହାଲ୍‌କ ଶୁଖିଗଲା । ସେ ଯଦି ଦୌଡ଼ି ପଳାଇବ, ତେବେ ସେ ଭଦ୍ରଲୋକ ଚିତ୍କାର କରି ପାରନ୍ତି । ତା'ଛଡ଼ା ଅତି ଶୀଘ୍ର ପାଚେରି ଟପିବା ବି ତାହା ପକ୍ଷରେ ସମ୍ଭବ ନୁହେଁ ।





ଗାତ ଖୋଳୁଥିବା ଲୋକ ତା' ଆଡ଼େ ଚାହିଁଥିବାର ଦେଖି ସୁଧୀର ତାଙ୍କ ପାଖକୁ ଯାଇ କହିଲା, "ମୋର ପଣସଟିଏ ଅତ୍ୟନ୍ତ ଦରକାର ଥିଲା । କିଣିବାକୁ ପ୍ରସ୍ତାବ ଦେଲି । କିନ୍ତୁ ଏମାନେ ରାଜି ହେଲେ ନାହିଁ । ତେଣୁ···"

"ଓ, ତମେହିଁ କିଣିବାକୁ ଚାହୁଁଥିଲ ପରା! ମୋ ସ୍ତ୍ରୀ କହୁଥିଲେ । ସେ ଟିକିଏ ବଦ୍‌ମେଜାଜୀ ଲୋକ । କିଛି ମନେ କରିବ ନାହିଁ । ଗୋଟାଏ କାହିଁକି, ଦୁଇଟା ନେଇ ଯାଅ ।" ଭଦ୍ରଲୋକ କହିଲେ ।

"ଆପଣ ତା'ହେଲେ ଗୃହକର୍ତ୍ତା! କିନ୍ତୁ ଆପଣ ଏକାକୀ ଗାତ ଖୋଳୁଛନ୍ତି କାହିଁକି?" ସୁଧୀର ଆଶ୍ଚର୍ଯ୍ୟ ହୋଇ ପଚାରିଲା ।

"ଆରେ ଭାଇ, ସେ କଥା ପଚାରନା । ମୋ ସ୍ତ୍ରୀର ଗୋଟାଏ ବିଲେଇ ଥିଲା । ସିଏ ମୋ ସ୍ତ୍ରୀର ପ୍ରାଣ । ସ୍ତ୍ରୀ ସପ୍ତାହେ ପାଇଁ ବାପ ଘରକୁ ଯାଇଥିଲେ । ବିଲେଇକୁ ଭଲ କରି ଖାଇବାକୁ ପିଇବାକୁ ଦେଇ ତା'ର ଯତ୍ନ ନେବାର ଦାୟିତ୍ୱ ମୋ ଉପରେ ଦେଇ ଯାଇଥିଲେ । କିନ୍ତୁ ସେ ଯିବା ପରେ ବିଲେଇ ମୋଟେ ଖିଆପିଆ କଲା ନାହିଁ । ଗତ କାଲି ମୋ ପଶମ ଶାଲ୍ ଉପରେ ଗୋଟାଏ ଝିଣ୍ଟିକା ଦେଖି ତା' ଉପରକୁ ଲଂଫ ଦେଇ ମୋ ନୂଆ ଶାଲ୍‌ଟିକୁ ଚିରି ଦେଲା । ମୁଁ ରାଗରେ ତାକୁ ପିଟି ଦେଲି । ସେ ମରିଗଲା । ତାକୁ ଥଳିରେ ଭର୍ତ୍ତିକରି ଲୁଚେଇ ରଖିଥିଲି । ମୋ ସ୍ତ୍ରୀ ଆଜି ଆସି ବିଲେଇ ଖୋଜିବାରୁ କହିଲି ସେ କୁଆଡ଼େ ପଳେଇଛି । ସେ ଦୁଃଖରେ ସାରା ଦିନ ଖାଇ ନାହାନ୍ତି । ଯାହାହେଉ, ଏ ଥଳିରେ ବିଲେଇ ଅଛି । ଥଳିଟି ପୋତିଦେଲେ ଶାନ୍ତି ପାଇବି । ତମେ ଟିକିଏ ଗାତ ଖୋଳିବାରେ ସାହାଯ୍ୟ କରି ବାବୁ!" ଭଦ୍ରଲୋକ କହିଲେ ।

ସୁଧୀର ଉତ୍ସାହରେ ତାଙ୍କ ହାତରୁ ଶାବଳ ନେଇ ଗାତ ଖୋଳିଲା । ମିନିଟିଏ ପରେ ଘରର ପଛପଟ ଦ୍ୱାର ଖୋଲିଗଲା । ଜଣେ ମହିଳା ପାଟିକରି କହିଲେ, "ତମେ କୁଆଡ଼େ ଗଲ କି? ସେଠି କ'ଣ କରୁଛ? ଏକୁଟିଆ ଜହ୍ନରାତ ଉପଭୋଗ କରୁଛ ପରା!"

“ହେଇଟି, ମୁଁ ଯାଉଛି । ତମେ ଏ ଥଳି ପୋତିଦେଇ ଗାତ ବୁଜି ଦେଇ ଚାଲିଯିବ । ହଁ, ଗୋଟାଏ ନୁହେଁ, ଦୁଇଟା ପଣସ ନେଇଯିବ । ବୁଝିଲ ?” ଏହା କହି ଭଦ୍ରଲୋକ ତରତରରେ ଚାଲିଗଲେ ।

କବାଟ ବନ୍ଦ ହେଲା । ସୁଧୀର ଖୁସି ହୋଇ ଥଳି ଗାତରେ ପୂରାଇ ଗାତ ବୁଜାଇ ଦେଇ ଧିରେ ଧିରେ ପାଚିରି ଟପି ରାସ୍ତାକୁ ଗଲା ଓ ଘରମୁହାଁ ଚାଲିଲା । ଅବଶେଷରେ ସେ ପଣସ ଆଣି ପାରୁଛି, ଏହାଠୁଁ ବଳି ଆଉ ଖୁସିର କଥା କ’ଣ ହୋଇପାରେ ?



“ଏ ଟୋକା ! ଥଳିରେ କ’ଣ ଧରି ଏତେ ରାତିରେ ଚାଲିଛୁ ?”

ଏ ପ୍ରଶ୍ନ ଶୁଣି ସୁଧୀର ଚମକି ପଡ଼ିଲା । ଦେଖିଲା ଦୁଇଜଣ ସିପାହୀ ତା’ ଆଡ଼େ ମାଡି ଆସୁଛନ୍ତି ।

“କିଛି ନାହିଁ ଆଜ୍ଞା, ଜଣେ ଭଦ୍ରଲୋକଙ୍କଠୁଁ ପଣସଟିଏ ମାଗି ଆଣିଛି । ବଡ଼ ଜରୁରି ଦରକାର !” ସୁଧୀର କହିଲା ।

“ରାତି ଅଧରେ ପଣସ ଦରକାର ହେଲା ? ଏଡ଼େ ପଣସ-ରସିକ ଆମେ ଆଉ କେବେ ଦେଖି ନଥିଲୁଁ ।” ଏହା କହି ଜଣେ ସିପାହୀ ସୁଧୀରର ଥଳି ଦେହରେ ତା’ ବର୍ଚ୍ଛାବାଲା ଲାଠି ବାଡ଼େଇ ଦେଲା ।

ସଙ୍ଗେ ସଙ୍ଗେ ଭିତରୁ ଶୁଭିଲା, “ମ୍ୟାଉଁ !”

“ଆରେ, ଇଏ କ’ଣ ? ପଣସ କ’ଣ ବିଲେଇ ଭଳି ବୋବାଇଲାଣି ?” ସିପାହୀମାନେ ଥଳିଟି ଖୋଲି ଦେଖିଲେ ଭିତରେ ବିଲେଇ ।

ସୁଧୀର ବୁଝିଲା, ସେ ବିଲେଇ ଥିବା ଥଳିଟି ନ ପୋତି ପଣସ ଥିବା ଥଳି ଭୁଲରେ ପୋତି ଦେଇଛି । କିନ୍ତୁ ସିପାହୀମାନଙ୍କୁ କି କୈଫିୟତ ଦେବ ?

ସିପାହୀମାନେ କିଛି ବୁଝି ନପାରି ବଲବଲ ଅନାଇ ରହିଲେ । “ଇଏତ ବଡ଼ ଆଶ୍ଚର୍ଯ୍ୟ ବ୍ୟାପାର !” ଜଣେ କହିଲା । “ଏହାକୁ ଅଟକାଇ ରଖିବା । ଆଗାମୀକାଲି ହାକିମ ଯାହା ବିଚାର କରିବେ ।” ଦ୍ୱିତୀୟ ଜଣକ କହିଲା ।

କିଛି ନ ଶୁଣି ସେମାନେ ସୁଧୀରକୁ ନେଇ ଯାଇ ରାତିରେ ସେମାନଙ୍କ କାର୍ଯ୍ୟାଳୟରେ

ଅଟକ କରି ରଖିଲେ । ସକାଳେ ତାକୁ ନେଇଗଲେ ହାକମଙ୍କ ପାଖକୁ ।

"ହଜୁର! ରାତି ଅଧରେ ଇଏ ଥଳରେ କ'ଣ ନେଇ ଯାଉଥିଲା । ଆମେ ପଚାରିବାରୁ କହିଲା ପଣସ । ଦେଖିବା ବେଳକୁ ବିଲେଇ!" ସେମାନେ ହାକମଙ୍କୁ କହିଲେ ।

ହାକମ ସୁଧୀର ଆଡ଼େ ଚାହିଁଥାନ୍ତି; ସୁଧୀର ହାକମଙ୍କ ଆଡ଼େ ଚାହିଁଥାଏ । କାରଣ ହାକମ ଆଉ କେହି ନୁହନ୍ତି, ରାତିରେ ସୁଧୀର ଯାହାଙ୍କୁ ଭେଟିଥିଲା, ସିଏ ସେଇ ପଣସ ଗଛର ମାଲିକ ।

ବିଲେଇ ପୁଣି ମ୍ୟାଉଁ ମ୍ୟାଉଁ ହେଲା ।

ସୁଧୀର ଲକ୍ଷ୍ୟ କଲା, ହାକମ ହସ ଚାପୁଛନ୍ତି । ଗମ୍ଭୀର ହେବାର ଅଭିନୟ କରି ସେ ସିପାହୀମାନଙ୍କୁ କହିଲେ, "ତମେମାନେ ଏତିକ ବୁଝିପାରୁ ନାହିଁ? ଇଏ ଜଣେ ମହା ଯାଦୁକର । ଯାଦୁକର ବିନା ରାତି ଅଧରେ କେହି ବିଲେଇ ଧରି ବୁଲେ? ଯାଅ, ତମେମାନେ ଯାଅ ।"

ସିପାହୀମାନେ ଗିବା ପରେ ହାକମ ବେଦମ ହସି କହିଲେ, "ତମେ ତେବେ ବିଲେଇ ଥଳି ବଦଳରେ ପଣସ ଥଳି ପୋତି ଦେଇଛ! ଯାହାହେଉ, ବଡ଼ ଭଲ କଲ । ବିଲେଇ ଯେ ବଞ୍ଚି ରହିଛି, ତାହା ତମରି ପାଇଁ । ମୋ ସ୍ତ୍ରୀ କେଡ଼େ ଖୁସି ହେବେ!"

ସେ ସଙ୍ଗେ ସଙ୍ଗେ ଜଣେ ସିପାହୀ ପଠାଇ ବାଡ଼ିରୁ ଅନ୍ୟ ଗୋଟିଏ ପାଚିଲା ପଣସ ଅଣାଇଲେ ଓ ସୁଧୀରକୁ ଦେଲେ ।

"ପରେ ପୁଣି ଆସିବ । ଗପସପ ହେବା । ବର୍ତ୍ତମାନ ବିଲେଇକୁ ନେଇଯାଇ ମୋ ସ୍ତ୍ରୀକୁ ଦେଖାଏଁ ।" ହାକମ କହିଲେ ।

ସୁଧୀର ପଣସ ନେଇ ଘରେ ପହଞ୍ଚିବା ବେଳକୁ ମାଉସୀ ବୋଲି ଡକା ହେଉଥିବା ପଡ଼ୋଶୀ ଘରର ଭଦ୍ରମହିଳା କହିଲେ, "ଆରେ! ତମେ କୁଆଡ଼େ ଯାଇଥିଲ ରାତି ସାରା? ବିଚରା ରମା ତମ ସକାଶେ କେଡ଼େ ଉଦ୍‌ବିଗ୍ନ!"





# ଛାଇର ମାଲିକ

ରାଇତପୁର ଗାଁର କଥା । ମହାଜନ ଶୁଭ ସିଂହକୁ ନ ଜାଣେ କିଏ? ଅବଶ୍ୟ ତାକୁ ସମସ୍ତେ ଜାଣନ୍ତି ବୋଇଲେ ସେ ଯେ ଜଣେ ବିଶିଷ୍ଟ ବ୍ୟକ୍ତି, ତାହା ନୁହେଁ । ସେ ନିଜର ଖଳ ବୁଦ୍ଧି ଯୋଗୁଁ ଏବଂ ଅନ୍ୟକୁ ଶୋଷଣ କରିବା ଦିଗରେ ନିଜର ଦକ୍ଷତା ଯୋଗୁଁ ସମସ୍ତଙ୍କ ପାଖରେ ଜଣାଶୁଣା ହୋଇଥାଏ ।

ତା' ଘର ଆଗରେ ଗୋଟିଏ ବଡ଼ ଗଛ ଥାଏ । ଗଛଟି ତା' ନିଜର । ଗରମ ଦିନରେ ତା' ଛାଇ ବଡ଼ ଶୀତଳ ଲାଗୁଥାଏ ।

ଦିନେ ଖରାବେଳେ ଶୁଭ ସିଂହ ଦେଖିଲା, ମଲମୁଣ୍ଡିଆ ଜଯ୍ରୀ ଦାସ ଗଛ ମୂଳେ ବସିଛି ।

"ହଇରେ ଜଯ୍ରୀ! ତୁ କାହା ଅନୁମତିରେ ମୋ ଗଛର ଛାଇ ଉପଭୋଗ କରୁଛୁ?" ଶୁଭ ସିଂହ ଧମକ ଦେଇ ପଚାରିଲା ।

"ମହାଜନ ପୁଅ! ସେଥିରେ ତମର କ'ଣ ଯାଏ ଆସେ? ଟିକିଏ ଛାଇରେ ବସିଗଲି । ତମର ପୁଣ୍ୟ ହେବ ।" ଜଯ୍ରୀ କହିଲା ।

"ଟିକିଏ ଛାଇରେ ବସିଗଲି! ଆହା! ଛାଇ ଅବା ସତେ ତୋର ପୈତୃକ ସମ୍ପତ୍ତି! ଯଦି ଛାଇରେ ବସିବାକୁ ଏତେ ସଉକ୍, ତେବେ ଛାଇ କିଣି ନେଉ ନାହୁଁ?" ଶୁଭ ସିଂହ ଥଟ୍ଟାଳିଆ ଭାବରେ ପଚାରିଲା ।

"ହଉ ବାବୁ, କିଣିନେବା । ଦାମ କେତେ?" ଜଯ୍ରୀ ଦାସ ପଚାରିଲା ।

"ପଚିଶ ଟଙ୍କା!"

ଜଯ୍ରୀ ଦାସ ସଙ୍ଗେ ସଙ୍ଗେ ଗାଁର ପାଞ୍ଚଜଣ ବିଶିଷ୍ଟ ବ୍ୟକ୍ତିଙ୍କୁ ସାକ୍ଷୀ ଭାବରେ ନେଇ ଆସିଲା । ଆହୁରି ଦଶ ପନ୍ଦର ଜଣ ଲୋକ ମଜା ଦେଖିବାକୁ ଆସିଲେ । ଲେଖାପଢ଼ି ହୋଇଗଲା । ଜଯ୍ରୀ ଦାସ ହେଲା ସେ ଗଛର ଛାଇର ମାଲିକ ।

**ପଚଶବର୍ଷ ତଳର 'ଚନ୍ଦାମାମା'ରୁ ଗୃହୀତ**

ପନ୍ଦର ଦିନ ଗଲା । ମାସେ ଗଲା । ଜମ୍ବୀ ଦାସକୁ ଆଉ ସେ ଛାଇ ପାଖକୁ ଆସିବାର ଦେଖାଗଲା ନାହିଁ । ଶୁଭ ସିଂହ ମନେ ମନେ ହସି କହୁଥାଏ, "ବୋକାଟା ପଚିଶ ଟଙ୍କା ଗଣିଦେଲା ବିନା କାରଣରେ!"

ଦିନେ ହଠାତ୍ ସେ ଦେଖିଲା, ଜମ୍ବୀ ଦାସ ଆସି ତା' ଦୁଆର ମୁହଁରେ ବସିଛି । "ଏଠି କାହିଁକି ବସିଛୁ?" ଶୁଭ ସିଂହ ପଚାରିଲା ।

"ଧିରେ, ବାବୁ, ଧିରେ । ମୋ ଛାଇରେ ମୁଁ ବସିଛି । ବେଶି ପାଟି କରନା ।" ଜମ୍ବୀ ଦାସ ଜବାବ ଦେଲା ।

ଶୁଭ ସିଂହ ଲକ୍ଷ୍ୟ କରି ଦେଖିଲା, ଋତୁ ବଦଳି ଗଲଣି । ଗଛର ଛାଇ ଆସି ଦାଣ୍ଡ ଦୁଆରେ ପଡ଼ୁଛି । ସେ ଚୁପ୍ ହୋଇଗଲା । କିନ୍ତୁ ଜମ୍ବୀ ଦାସ ପ୍ରତି ତା' ମନରେ ଭୟ ଆସିଗଲା ।

ଆହୁରି ଦୁଇମାସ ଗଲା । ଦିନେ ଶୁଭ ସିଂହର ଝିଅକୁ କନ୍ୟା ହିସାବରେ ଦେଖିବା ନିମନ୍ତେ ଗୋଟିଏ ଦୂର ଗାଁର ବରପକ୍ଷର ଲୋକେ ଆସିଥାନ୍ତି । ସେମାନଙ୍କ ପାଇଁ ଯେଉଁ ସ୍ଥାନରେ ଖାଇବାକୁ ଦିଆ ହେଉଥାଏ, ସେଠି ଆସି ହଠାତ୍ ଜମ୍ବୀ ଦାସ ବସିଗଲା । ଅତିଥି-ମାନେ କିଛି ବୁଝି ନପାରି ଆଶ୍ଚର୍ଯ୍ୟ ହୋଇ ଅନାଇଲେ ।

କିନ୍ତୁ ଶୁଭ ସିଂହ ବୁଝିଲା । ଗଛର ଛାଇ ଆସି ସେଠି ପଡ଼ୁଥାଏ ।

"ଜମ୍ବୀ! ଟିକିଏ ଏଆଡ଼େ ଆସିଲ!" ଶୁଭ ସିଂହ ନମ୍ର ଭାବରେ ଡାକିଲା । ଜମ୍ବୀ ଉଠିଗଲା ।

"ଭାଇ, ଏମାନଙ୍କ ଆଗରେ ଛାଇ କିଣିବା କଥା ଉଠାଅ ନାହିଁ । କିଛି ଲାଭ ରଖି ଛାଇ ମୋତେ ବିକିଦିଅ ।" ଶୁଭ ସିଂହ କହିଲା ।

"ଲାଭ ଲୋଡ଼ା ନାହିଁ । ଯେତେବେଳେ ଇଚ୍ଛା ମୋ ପଚିଶ ଟଙ୍କା ଦେଇଦେବ । ତମେ ଏଡ଼େ ଭଲ ବ୍ୟବହାର କଲଣି, ଏଇ ଯଥେଷ୍ଟ ।" ଏହା କହି ଜମ୍ବୀ ଦାସ ଚାଲିଗଲା ।





# ବିଷ୍ଣୁ ପୁରାଣ

ତା'ପରେ ସୁଗ୍ରୀବ କିଷ୍କିନ୍ଧ୍ୟାର ରାଜା ହେଲେ । ବାଲିପୁତ୍ର ଅଙ୍ଗଦ ଯୁବରାଜ ଭାବରେ ଅଭିଷିକ୍ତ ହେଲେ । ଅଙ୍ଗଦଙ୍କ ଉପରେ ରାଜକାର୍ଯ୍ୟ ସମର୍ପଣ କରି ସୁଗ୍ରୀବ ବିଳାସ-ବ୍ୟସନରେ ଅଧିକାଂଶ ସମୟ ବିତାଇଲେ । ଶ୍ରୀରାମଙ୍କୁ ସାହାଯ୍ୟ କରିବା ପାଇଁ ସେ କଥା ଦେଇଥିଲେ; କିନ୍ତୁ ସେକଥା ସେ ସମ୍ପୂର୍ଣ୍ଣ ଭୁଲିଗଲେ । ଦିନେ ଲକ୍ଷ୍ମଣ ସେକଥା ଚେତେଇ ଦେବାପାଇଁ ଆସି ପହଞ୍ଚିଲେ କିଷ୍କିନ୍ଧ୍ୟାରେ । ହନୁମାନ ସଙ୍ଗେ ସଙ୍ଗେ ସୁଗ୍ରୀବଙ୍କୁ କହିଲେ, "ଶ୍ରୀରାମଙ୍କ କାର୍ଯ୍ୟ ସମାଧାନ କରିବା ହେଉଛି ଆମର ପ୍ରଥମ କର୍ତ୍ତବ୍ୟ ।"

ସୀତାଙ୍କୁ ଠାବ କରିବା ପାଇଁ ସୁଗ୍ରୀବ ଦୂତ ଓ ସୈନ୍ୟମାନଙ୍କୁ ଚାରିଦିଗକୁ ପଠାଇଲେ । ଅଙ୍ଗଦ, ହନୁମାନ ଓ ଜାମ୍ବବାନ ଦକ୍ଷିଣ ଦିଗକୁ ଗଲେ । ସେମାନଙ୍କ ହାତରେ ଶ୍ରୀରାମ ତାଙ୍କର ମୁଦିଟିଏ ଖୋଲି ଚିହ୍ନ ସ୍ୱରୂପ ଦେଲେ ।

ବାନରମାନେ ସାଗର ତଟରେ ପହଞ୍ଚିଲେ । ସେମାନେ ଜାଣିଥିଲେ ଜଟାୟୁ ମୃତ୍ୟୁ ପୂର୍ବରୁ କହିଥିଲା ଯେ ରାବଣ ସୀତାଙ୍କୁ ଦକ୍ଷିଣ ଦିଗକୁ ନେଇ ଯାଇଛି । ଏଇ ସମୟରେ ଛିନ୍ନପକ୍ଷ ସମ୍ପାତି ନାମକ ଏକ ବୃଦ୍ଧ ପକ୍ଷୀ ଖାଦ୍ୟ ଅନ୍ୱେଷଣରେ ଆସି ସେଠାରେ ପହଞ୍ଚିଲା । ସେ ଥିଲା ଜଟାୟୁର ଭାଇ ଓ ଦେଖିବାକୁ ପର୍ବତ ତୁଲ୍ୟ । କେତେ ଯୁଗ ପୂର୍ବରୁ ଥରେ ଜଟାୟୁ ଓ ସମ୍ପାତି ଦୁଇଭାଇ ସୂର୍ଯ୍ୟମଣ୍ଡଳ ପର୍ଯ୍ୟନ୍ତ ଉଡିବା ପାଇଁ ପ୍ରତିଯୋଗିତା କରିଥିଲେ । ଜଟାୟୁ ବହୁତ ଉପରକୁ ଉଠିବା ପରେ ତାକୁ କଷ୍ଟ ହେବାରୁ

୧୩. ସୁନ୍ଦରାସ୍ବଣଂ



ସେ ଅଧିକ ଉଡିବା ପାଇଁ ପ୍ରଚେଷ୍ଟା କରିବାରୁ ବିରତ ହେଲା । କିନ୍ତୁ ସମ୍ପାତି ଉଡ଼ିକରି ଆହୁରି ଉର୍ଦ୍ଧ୍ୱକୁ ଉଠିଯିବାରୁ ତା'ର ପକ୍ଷ ସବୁ ସୂର୍ଯ୍ୟଙ୍କ ତାପରେ ପୋଡିଗଲା ଓ ସେ ଦକ୍ଷିଣ ସମୁଦ୍ରରେ ଖସି ପଡିଲା । ସେହି ଦିନଠାରୁ ସେ ସେହି-ଠାରେହିଁ ରହିଛି । ସମ୍ପାତି ବାନରମାନଙ୍କର ସବୁକଥା ଶୁଣି ଅଙ୍ଗଦଙ୍କୁ ପିଠିରେ ବସାଇ ଲଙ୍କାପୁରୀ ଦୂରରୁ ଦେଖାଇ ଦେଲା ।

ହନୁମାନ ଥିଲେ ମହାନ୍ ଶକ୍ତିଶାଳୀ । କିନ୍ତୁ ଦେବତାଙ୍କ ଅଭିଶାପରେ ସେ ନିଜର ଶକ୍ତି କଥା ଭୁଲି ଯାଇଥିଲେ । ସେ କଥା ଜାମ୍ବବାନ୍ ଜାଣିଥିଲେ । ସେ ତେଣୁ ତାଙ୍କୁ ସ୍ମରଣ କରାଇଦେଇ କହିଲେ, "ହନୁମାନ ଦେବତାଙ୍କ ଅଭିଶାପ ତୁମ ଉପରେ ଥିଲା ଯେ ଯେପର୍ଯ୍ୟନ୍ତ ତୁମେ ଭଗବାନ ରାମଙ୍କୁ ନ ଦେଖିଛ ସେପର୍ଯ୍ୟନ୍ତ ତୁମର ଶକ୍ତି ଓ ସାମର୍ଥ୍ୟ ବିଷୟ ତୁମେ ଭୁଲିଯିବ । ଶ୍ରୀରାମଙ୍କ ସହ ସାକ୍ଷାତ୍ ହେବା ପରେ ତମେ ତୁମର ପୂର୍ବଶକ୍ତି ଫେରି ପାଇଛ । ଶ୍ରୀରାମଙ୍କ କାର୍ଯ୍ୟସିଦ୍ଧି ପାଇଁ ଶହେ ଯୋଜନ ସମୁଦ୍ର ଲଂଘନ ତମେହିଁ କରିପାରିବ ।"

ଶ୍ରୀରାମଙ୍କୁ ସ୍ମରଣ କରିବା ମାତ୍ରେ ହନୁମାନ ଅସୀମ ଶକ୍ତିର ଅଧିକାରୀ ହୋଇ ଏକ ଲମ୍ଫରେ ଆକାଶ ମାର୍ଗରେ ଲଙ୍କା ଦିଗରେ ଉଡ଼ିଗଲେ ।

ପବନ ପୁତ୍ର ହନୁମାନ ଯେତେବେଳେ ଆକାଶ ମାର୍ଗରେ ଉଡି ଯାଉଥିଲେ ତାଙ୍କ ବୁଦ୍ଧି ଓ ସାମର୍ଥ୍ୟ ପରୀକ୍ଷା କରିବା ପାଇଁ ଦେବତାମାନେ ସୁରସାଙ୍କୁ ପଠାଇଲେ । ସୁରସା ଗୋଟିଏ ରାକ୍ଷସୀର ଭୟଙ୍କର ଆକୃତି ନେଇ ମୁହଁ ଖୋଲି ହନୁମାନଙ୍କର ରାସ୍ତା ବନ୍ଦ କଲେ । ହନୁମାନ ମଧ୍ୟ ତାଙ୍କ ଶରୀରକୁ ସୁରସାଙ୍କଠାରୁ ଆହୁରି ବଡ଼ କରିଦେଲେ । ସୁରସା ତାଙ୍କ ମୁହଁକୁ ଆହୁରି ବିସ୍ତାର କରିଲେ । ହନୁମାନ ହଠାତ୍ ଶରୀରକୁ ଛୋଟ କରିଦେଇ ସୁରସାଙ୍କ ମୁହଁରେ ପଶି ପୁଣି ବାହାରି ଆସିଲେ । ତାଙ୍କର ଏପରି ବୁଦ୍ଧି ଓ ସାମର୍ଥକୁ ଦେବତାମାନେ ଖୁବ୍ ପ୍ରଶଂସା କଲେ ।

ସମୁଦ୍ର ଉପରେ ଆକାଶରେ ପୁଣି ସେ ଉଡ଼ିବାକୁ ଲାଗିଲେ । ଏଇ ସମୟରେ ସିଂହିକା ନାମକ ଛାୟାଗ୍ରହଣୀ ରାକ୍ଷସୀ ପାଣି ଭିତରେ




ଥାଇ ଛାଇ ମାଧ୍ୟମରେ ହନୁମାନଙ୍କୁ ଆକର୍ଷଣ କରିବାକୁ ଲାଗିଲା । ହନୁମାନ ଆକାଶ ମାର୍ଗରୁ ଓହ୍ଲାଇ ଆସି ତାକୁ ମାରି ପକାଇଲେ ।

ଏତେଗୁଡ଼ିଏ ବିଘ୍ନ ଅତିକ୍ରମ କରି ସେ ପୁଣି ଆକାଶମାର୍ଗରେ ଉଡ଼ିବାକୁ ଲାଗିଲେ । ସେତେବେଳେ ସୁବର୍ଚ୍ଚଳା ନାମ୍ନୀ ଏକ ମଗର କନ୍ୟା ସମୁଦ୍ରରେ ମୁହଁ ଖୋଲି ରହି ଭାସୁଥାଏ । ହନୁମାନଙ୍କର ଶ୍ରମ ବଶରୁ ଦେହରୁ ନିର୍ଗତ ସ୍ୱେଦବିନ୍ଦୁମାନ ସମୁଦ୍ର ଉପରେ ଝରି ପଡ଼ିଲା । ସୁବର୍ଚ୍ଚଳାଙ୍କ ପାଟି ଭିତରେ ମଧ୍ୟ କେତେଗୁଡ଼ିଏ ବିନ୍ଦୁ ପଡ଼ିଲା । ସେଇ ଶକ୍ତିଶାଳୀ ବିନ୍ଦୁ ସୁବର୍ଚ୍ଚଳାଙ୍କ ଗର୍ଭରେ ସନ୍ତାନ ଉତ୍ପତ୍ତିର କାରଣ ହେଲା । ଯଥା ସମୟରେ ଯେଉଁ ସନ୍ତାନଟି ଜନ୍ମ ହେଲା ତା'ର ନାମ ଥିଲା ମକରଧ୍ୱଜ ।

ଅନେକ ଯୁଗ ଆଗରୁ ଥରେ ପର୍ବତମାନେ ଉଡ଼ି ବୁଲୁଥିଲେ । ସେତେବେଳେ ସେମାନଙ୍କର ପକ୍ଷ ଥାଏ । ଏପରି ଉଡ଼ୁ ଉଡ଼ୁ ସେମାନେ ଆକାଶ ଆଚ୍ଛନ୍ନ କରି ସ୍ୱର୍ଗ ଆଡ଼କୁ ଉଡ଼ି ଗଲେ । ଇନ୍ଦ୍ର କ୍ରୁଦ୍ଧ ହୋଇ ବଜ୍ରାଘାତରେ ସେମାନଙ୍କ ପକ୍ଷ ଛେଦନ କଲେ । ଛିନ୍ନପକ୍ଷ ପର୍ବତ ଗୁଡ଼ିକ ପୃଥିବୀର ଯେଉଁ ଯେଉଁ ସ୍ଥାନରେ ପଡ଼ିଲେ ସେଇଠାରେହିଁ ଅନନ୍ତକାଳ ପାଇଁ ରହିଗଲେ । ସେତେବେଳେ ଅଳ୍ପ କେତେକ ପର୍ବତ ଇନ୍ଦ୍ରଙ୍କ ଭୟରେ ସମୁଦ୍ର ମଧ୍ୟରେ ଲୁଚି ଯାଇଥିଲେ । ସେମାନଙ୍କର ଏବେ ମଧ୍ୟ ପକ୍ଷ ଅଛି । ହିମାଳୟ ପୁତ୍ର ମୈନାକ ତନ୍ମଧ୍ୟରୁ ଜଣେ । ସେ ହନୁମାନଙ୍କୁ ଦେଖି ଭଗବାନ୍ ରାମଙ୍କ କାର୍ଯ୍ୟରେ ସାହାଯ୍ୟ କରିବା ଉଦ୍ଦେଶ୍ୟରେ ଧୀରେ ଧୀରେ ପାଣି ଭିତରୁ ମୁଣ୍ଡ ଟେକି ଉଠିଲେ ଓ ହନୁମାନଙ୍କୁ ଡାକି କହିଲେ, "ହନୁମାନ୍, ମୋ ଉପରେ ଓହ୍ଲାଇ କ୍ଷଣକାଳ ବିଶ୍ରାମ ନେଇ ପୁଣି ନିଜ ବାଟରେ ଯାଅ ।" ହନୁମାନ ଅଳ୍ପ ହସି କହିଲେ, "ଶ୍ରୀରାମଙ୍କ କୃପାରୁ ମୋର କୌଣସି କାର୍ଯ୍ୟରେ କ୍ଳାନ୍ତି ଆସେ ନାହିଁ । କିନ୍ତୁ ଆପଣଙ୍କ ସୌଜନ୍ୟ ଓ ଶୁଭେଚ୍ଛାରେ ମୁଁ ଆନନ୍ଦିତ ଓ ଉତ୍ସାହିତ । ଏବେ ଆପଣଙ୍କୁ ସମ୍ମାନ ଦେଖାଇବା ପାଇଁ ଆପଣଙ୍କୁ ସ୍ପର୍ଶ କରି ଯାଉଛି ।" ତା'ପରେ ସେ ମୈନାକଙ୍କୁ ସ୍ପର୍ଶ କରି ଉଡ଼ି ଉଡ଼ି ଯାଇ ଲଙ୍କାରେ ପହଞ୍ଚିଲେ ।



ଲଙ୍କା ନଗରୀର ରକ୍ଷାକର୍ତ୍ତ୍ରୀ ନଗର ଦେବୀ ଲଙ୍କିନୀ ହନୁମାନଙ୍କୁ ଦେଖି ତ୍ରିଶୂଳ ଉଠାଇ ମାରିବାକୁ ଧାଇଁଲେ । ହନୁମାନ ତତ୍କ୍ଷଣାତ୍ ସୂକ୍ଷ୍ମ ରୂପ ଧାରଣ କରି ଲଙ୍କାଗଡ଼ର ଦ୍ୱାର ଭିତରେ ପଶିବା ବେଳେ ଲଙ୍କିନୀ ପୁଣି ହନୁମାନଙ୍କୁ ମାଛିଟିଏ ପରି ନିଜ ହାତ ମୁଠାରେ ଧରିନେଲେ । କିନ୍ତୁ ହନୁମାନ ହାତପାପୁଲି କାଟିଦେବାରୁ ତାଙ୍କ ମୁଠା ଶିଥିଳ ହୋଇଗଲା ଓ ହନୁମାନ ସେଠାରୁ ବାହାରି ଆସି ପୁଣି ନିଜ ରୂପ ଧରି ତାଙ୍କୁ ଜୋର୍ କରି ବିଧା ମାରିଲେ । ସେଇଥିରେ ସେ ମୂର୍ଚ୍ଛା ହୋଇ ପଡିଗଲେ । ଚେତନା ଫେରି ଆସିବାରୁ ସେ ହନୁମାନଙ୍କୁ ଡାକି କହିଲେ, "ହନୁମାନ, ମୋତେ ଥରେ ବ୍ରହ୍ମା କହିଥିଲେ କି ଯେବେ ମୁଁ ଏପରି ବେହୋସ ହୋଇଯିବି ସେତେବେଳେ ଲଙ୍କାର ପତନ ଆରମ୍ଭ ହେବ ।" ଏକଥା କହି ସେହି ଗନ୍ଧର୍ବନାରୀ ଦିବ୍ୟରୂପ ଧରି ଆକାଶରେ ଉଡ଼ିଗଲେ ।

ହନୁମାନ ଲଙ୍କା ନଗରୀରେ ପ୍ରବେଶ କରି ରାବଣର ରାଜନବର ଓ ତା'ର ଐଶ୍ୱର୍ଯ୍ୟ ଦେଖି ଆଶ୍ଚର୍ଯ୍ୟ ହେଲେ । ସେ ସୂକ୍ଷ୍ମ ରୂପରେ ରାଜପୁରୀ ସାରା ବୁଲି ସୀତାଙ୍କୁ ଖୋଜିଲେ ।

ଶେଷରେ ହନୁମାନ ଅଶୋକବନରେ ସୀତାଙ୍କୁ ଦେଖିଲେ । ଗୋଟିଏ ଝଙ୍କମଲମଲ ମଣ୍ଡପ ଉପରେ ବସି ସୀତା ଶ୍ରୀରାମଙ୍କୁ ସ୍ମରଣ କରି ବିଳାପ କରୁଥିଲେ । ସେହି ମଣ୍ଡପର ଚାରିକୋଣରେ ନାନା ପ୍ରକାର ଆୟୁଧ ଧରି ରାକ୍ଷସୀମାନେ ସୀତାଙ୍କୁ ଜଗି ରହିଥିଲେ ।

ହନୁମାନ କ୍ଷୁଦ୍ରଦେହ ଧାରଣ କରି ଗୋଟିଏ ବୃକ୍ଷ ଶାଖାରେ ଲୁଚି ରହିଲେ । ଏହି ସମୟରେ ରାବଣ ବହୁଜନ ପରିବେଷ୍ଟିତ ହୋଇ ସେଠାରେ ପହଞ୍ଚି କହିଲା, "ହେ ସୀତା, ସ୍ୱପ୍ନରେ ବି ଭାବନାହିଁ ଯେ ରାମ ଜୀବନରେ କେବେ ଲଙ୍କାକୁ ଆସିପାରିବ ।"

ଏହାର ଉତ୍ତର ସୀତା ଏକ ତୃଣଖଣ୍ଡକୁ ଚାହିଁ କହିଲେ, "ହେ ରାବଣ, ତମେ ବି ସ୍ୱପ୍ନରେ ଭାବନାହିଁ ଯେ ତୁମର ବଳ, ପରାକ୍ରମ ଓ ବୈଭବ ଦେଖି ମୁଁ ତୁମର ବଶବର୍ତ୍ତୀ ହେବି । ତୁମର ପ୍ରକୃତ ମିତ୍ର ଓ ତୁମେ



ଦୁଷ୍ଟ ସ୍ୱଭାବର ବ୍ୟକ୍ତି । ତୁମକୁ ଦଣ୍ଡଦେବା ରାଜା ରାମଚନ୍ଦ୍ରଙ୍କର ଧର୍ମ ଓ କର୍ତ୍ତବ୍ୟ । ତୁମର ଅନ୍ୟ ସବୁ କଥା ମୋ ନିକଟରେ ଉନ୍ମାଦର ପ୍ରଲାପ ଭଳି ମନେ ହେଉଛି । ଅନ୍ତିମ ସମୟ ଆସିବା ପୂର୍ବରୁ ଆଉ କିଛି ପୁଣ୍ୟ କାର୍ଯ୍ୟ କର ।"

ରାବଣ ରାଗିଯାଇ ହାତରେ ତରବାରି ଧରି ଗର୍ଜି ଉଠିଲା, "ମୁଁ ତୁମକୁ ହାଣି ଦେବି ।"

ସୀତା କହିଲେ, "ତୁମେ ଭାବୁଛ କି ଏଇ କ୍ରୋଧ ଦେଖି ମୁଁ ତୁମର ଅଧୀନତା ସ୍ୱୀକାର କରିବି ? ତମେ ମୃତ୍ୟୁର ଅପେକ୍ଷାରେହିଁ ରହିଥାଅ ।"

ଏସବୁ ଶୁଣି ରାବଣ ରାଗକରି ସେଠାରୁ ଚାଲିଗଲା । ତା'ପରେ କ୍ରମେ ପହରା ଦେଉଥିବା ରାକ୍ଷସୀମାନେ ସେଠାରୁ ଚାଲିଗଲେ । ଏଇ ସୁଯୋଗ ଦେଖି ହନୁମାନ ଗଛରୁ ଓହ୍ଲାଇ ରାମନାମ ଜପକରି ସୀତାଙ୍କ ସମ୍ମୁଖରେ ଆସି ଠିଆ ହେଲେ । ସୀତା ଆଶ୍ଚର୍ଯ୍ୟ ହୋଇ ଅନାଇଥା'ନ୍ତି । ହନୁମାନ ସମସ୍ତ କଥା ବର୍ଣ୍ଣନା କରି ରାମଚନ୍ଦ୍ରଙ୍କ ମୁଦ୍ରିକା ତାଙ୍କ ହାତରେ ଦେଲେ । ତା'ପରେ ହନୁମାନ କହିଲେ, "ମା', ଆପଣ ମୋ କାନ୍ଧରେ ବସନ୍ତୁ । ମୁଁ ଆପଣଙ୍କୁ ଶ୍ରୀରାମଙ୍କ ପାଖରେ ପହଞ୍ଚାଇ ଦେବି ।"

"କିନ୍ତୁ ଏହା ଉଚିତ ହେବନାହିଁ । ସ୍ୱୟଂ ରାମଚନ୍ଦ୍ର ଏଠାକୁ ଆସି ରାବଣକୁ ବଧ କରି ମୋତେ ଏଠାରୁ ନେଇଯିବା ଉଚିତ ।" ତା'ପରେ ସୀତା ତାଙ୍କର ମଥାମଣି ଖୋଲି ହନୁମାନଙ୍କୁ ଦେଲେ । ତା'ପରେ ହନୁମାନ ସୀତାଙ୍କର ଅନୁମତି ନେଇ ରାବଣର ସମଗ୍ର ଫୁଲଫଳ ବଗିଚା ଧ୍ୱଂସ କରି ଫଳ ଖାଇବାରେ ଲାଗିଲେ । କାରଣ ସେ ସୀତାଙ୍କୁ ନ ଦେଖିବା ପର୍ଯ୍ୟନ୍ତ କିଛି ଖାଇ ନଥିଲେ । ହନୁମାନଙ୍କୁ ଧରିବାକୁ ଆସିଥିବା ରାବଣର ପୁଅ ଅକ୍ଷୟକୁମାରକୁ ଓ ଅନେକ ରାକ୍ଷସସେନାଙ୍କୁ ହନୁମାନ ବଧ କଲେ । ଅବଶେଷରେ ରାବଣ ପୁତ୍ର ଇନ୍ଦ୍ରଜିତ ହନୁମାନଙ୍କୁ ବ୍ରହ୍ମାସ୍ତ୍ର ପ୍ରୟୋଗ କଲେ । ବ୍ରହ୍ମାଙ୍କୁ ସମ୍ମାନ ଦେଖାଇବାକୁ ଯାଇ ସେ ଇନ୍ଦ୍ରଜିତର ଅଧୀନକୁ ଆସିଲେ । ତଦ୍ୱାରା ସେ ରାବଣ ସହିତ ମୁହାମୁହିଁ କଥାବାର୍ତ୍ତା କରିବାର ସୁଯୋଗ ପାଇବେ ।



ବନ୍ଦୀ ହନୁମାନଙ୍କୁ ରାବଣର ସମୀପକୁ ନିଆଗଲା । ରାବଣ ଉଚ୍ଚ ସିଂହାସନ ଉପରେ ବସି ଦର୍ପପୂର୍ଣ୍ଣ ଦୃଷ୍ଟିରେ ହନୁମାନଙ୍କୁ ଚାହିଁଲା । ସେଥିରେ ହନୁମାନ ଟିକିଏ ହସି ଦେଇ ନିଜ ଶରୀରକୁ ବିସ୍ତାର କରିବାକୁ ଲାଗିଲେ । ତାଙ୍କ ଦେହ ସ୍ଥିତ ବନ୍ଧନ ସବୁ ଛୁଡ଼ିଗଲା । ଶେଷରେ ନିଜ ଲଙ୍ଗୁଳରେ ରାବଣ ସହ ସମଉଚ୍ଚତାରେ ଏକ ଆସନ କରି ତହିଁପରେ ବସିଲେ ।

ହନୁମାନ୍ କହିଲେ, "ହେ ରାକ୍ଷସରାଜ ରାବଣ, ମୁଁ ହେଉଛି ଶ୍ରୀରାମ ଦୂତ ହନୁମାନ । ତୁମର ଦୁଷ୍କର୍ମ ଯୋଗୁ ଏବେ ରାମଚନ୍ଦ୍ର ଉଚିତ୍ ଦଣ୍ଡବିଧାନ କରିବେ । ପ୍ରସ୍ତୁତ ହୋଇଯାଅ । ଯଦି ବୁଦ୍ଧି ନାଶ ହୋଇନାହିଁ, ତେବେ ସୀତାଙ୍କୁ ଫେରାଇ ରାମଚନ୍ଦ୍ରଙ୍କ ପାଦପଦ୍ମରେ କ୍ଷମାପ୍ରାର୍ଥନା ପୂର୍ବକ ଶରଣ ନିଅ ।"

ହନୁମାନ କଥାରେ ରାଗିଯାଇ ରାବଣ ତା'ର ତରବାରି ଉଠାଇଲା । ଏହା ଦେଖି ବିଭୀଷଣ ରାବଣକୁ ବୁଝାଇଲା, "ଭାଇ; ଦୂତକୁ ସଂହାର କେହି କରେନାହିଁ । ଏଥିରେ ତୁମର ଯଶରେ କଳଙ୍କ ଲାଗିବ ।"

"ତେବେ ଗୋଟିଏ କାମ କର । ତା' ଲଙ୍ଗୁଡ଼ରେ କନା ବାନ୍ଧି ନିଆଁ ଲଗାଇ ଦିଅ ।" ରାବଣ ଆଦେଶ ଦେଲା ।

ରାକ୍ଷସ ସୈନ୍ୟମାନେ ଆନନ୍ଦରେ କୋଳାହଳ କରି, କନା ସବୁ ତାଙ୍କ ଲଙ୍ଗୁଡ଼ରେ ବାନ୍ଧିଲେ, ଯେତେ କନା ବାନ୍ଧିଲେ ମଧ୍ୟ ଲଙ୍ଗୁଡ଼ ବଢ଼ି ଚାଲିଥାଏ । ତେଲ ମଧ୍ୟ ଢଳା ଚାଲିଥାଏ । ଶେଷକୁ ତେଲ ବି ଶେଷ ହୋଇଗଲା । ତା'ପରେ ସେମାନେ ଆଉ କିଛି ବିଚାର ନ କରି ନିଆଁ ଲଗାଇ ଦେଲେ । ନିଆଁ ଜଳିବା ମାତ୍ରେ ହନୁମାନ ଏକ ବିରାଟ ଲମ୍ଫ ଦେଇ ଯାଇ ରାବଣର ପ୍ରାସାଦ ଉପରେ ବସିଲେ । ସେଠାରୁ ଡେଇଁ ଡେଇଁ ସମସ୍ତ ଘର ଉପରେ ନିଆଁ ଲଗାଇଲେ । କେବଳ ବିଭୀଷଣଙ୍କ ଘର ଛାଡ଼ି ସାରା ଲଙ୍କା ନଗରୀ ଭସ୍ମ ହୋଇଗଲା । ସେ ପୁଣି ଥରେ ସୀତାଙ୍କୁ ଦେଖାକରି ନିଜ ଲଙ୍ଗୁଡ଼କୁ ସମୁଦ୍ରରେ ବୁଡ଼ାଇ ଉଡ଼ିଗଲେ ।

କାର୍ଯ୍ୟରେ ସାଫଲ୍ୟ ଲାଭ କରିଥିବାରୁ ହନୁମାନଙ୍କର ବେଗ ଆହୁରି ବଢ଼ିଗଲା । ସେ

ଅନତି ବିଳମ୍ବେ ଯାଇ ଦକ୍ଷିଣ ସମୁଦ୍ର ତଟରେ ପହଞ୍ଚିଲେ । ସେଠାରୁ ଅନ୍ୟ କପିସେନାଙ୍କ ସହ ରାମଚନ୍ଦ୍ରଙ୍କ ପାଖରେ ପହଞ୍ଚି ସୀତାଙ୍କ ମଥାମଣି ଶ୍ରୀରାମଙ୍କ ହାତରେ ଦେଲେ । ରାମ ସୀତାଙ୍କୁ ମନେ ପକାଇ ଅନେକ ଦୁଃଖ କଲେ ଓ ମଥାମଣିଟି ଦେଖି ସୀତାଙ୍କର ଉପସ୍ଥିତି ଅନୁଭବ କରି କିଛିଟା ଆନନ୍ଦ ଅନୁଭବ କଲେ । ହନୁମାନ ସୀତା ଠାବ ଓ ଲଙ୍କା ଦହନର ସାରା ବୃତ୍ତାନ୍ତ ରାମଙ୍କୁ ଶୁଣାଇଲେ ।

ଶ୍ରୀରାମ ହନୁମାନଙ୍କୁ ସ୍ନେହରେ ଆଲିଙ୍ଗନ କରି କହିଲେ, "ତୁମପରି ବୀର ସାଙ୍ଗରେ ଥିଲେ ପୃଥିବୀରେ କିଛି ଅସମ୍ଭବ ନୁହେଁ । ତମେ ଆଜି ନିଜ ଜୀବନକୁ ସଙ୍କଟାପନ୍ନ କରି ମୋର ଯେଉଁ କାର୍ଯ୍ୟ କରିଛ ସେଥିପାଇଁ ତମେ ଚିରକାଳ ପାଇଁ ଜ୍ଞାନୀ ଓ ଯଶସ୍ୱୀ ହୋଇ ରହିବ ।" ତତ୍ପରେ ସେ ହନୁମାନଙ୍କୁ ଆଶୀର୍ବାଦ କଲେ ଓ କୋଦଣ୍ଡ ଧାରଣ କରି ରାବଣ ବଧ ପାଇଁ ଦୃଢ଼ ସଙ୍କଳ୍ପ ହେଲେ ।

ହନୁମାନ ଫେରିଯିବା ପରେ ବିଭୀଷଣ ରାବଣଙ୍କୁ ବୁଝାଇଲେ, "ଭାଇ, ରାମଚନ୍ଦ୍ର ନିଜେ ଭଗବାନଙ୍କ ଅବତାର । ଦୂତଟିଏ ଯାହା କରିଗଲା ଦେଖିଲ ତ ? ତା'ପରେ ତମେ ସାହସ କରୁଛ ରାମଙ୍କର ଶତ୍ରୁତା କରିବାକୁ ? ତୁମର ମୂର୍ଖତା ଯୋଗୁ ସାରା ରାକ୍ଷସକୁଳ ଧ୍ୱଂସ ହେବ । ଏବେ ମଧ ସମୟ ଅଛି । ସୀତାଙ୍କୁ ନେଇ ରାମଙ୍କୁ ଫେରାଇ ଦିଅ ଓ କ୍ଷମାଭିକ୍ଷା କର ।" ଏକଥା ଶୁଣି ରାବଣ ଗର୍ଜ୍ଜି ଉଠି କହିଲା, "ଆରେ କାପୁରୁଷ, ଭୀରୁ, ଭୁଲ ବଶତଃ ତୁ ରାକ୍ଷସ କୁଳରେ ଜନ୍ମ ହୋଇଛୁ । ସୂର୍ପଣଖାର ଅପମାନ ସାରା ରାକ୍ଷସ କୁଳର । ତୁ ରାକ୍ଷସ ବଂଶର କୁଳାଙ୍ଗାର । ତୁ ଏହିକ୍ଷଣି ଲଙ୍କା ଛାଡି ଚାଲିଯା । ନହେଲେ ତତେ ଟିକି ଟିକି କରି ହାଣି ଫୋପାଡ଼ି ଦେବି ।"

ବିଭୀଷଣ ତା'ର କେତେକ ଅନୁଚର ବର୍ଗଙ୍କୁ ନେଇ ଲଙ୍କା ଛାଡ଼ି ଚାଲିଗଲେ ।





# ଦୁଇ ରୋଟି

ଅନେକ ପୁରା କାଳର କଥା । ଇରାକ ଦେଶ ଭିତରେ ଥିଲା ଗୋଟିଏ ଛୋଟିଆ ରାଜ୍ୟ । ସେ ରାଜ୍ୟର ଯୁବକ ରାଜା ଅନେକ ଶାସନ ବ୍ୟବସ୍ଥା ଗ୍ରହଣ କରିଥିଲେ ।

ଥରେ ସେ ଠିକ୍ କଲେ କି ରାଜ୍ୟରେ ଭିଖାରି ରଖାଇ ଦିଆଯିବ ନାହିଁ । ରାଜ୍ୟ ସାରା ତାଙ୍କର ଏ ସିଦ୍ଧାନ୍ତ ଘୋଷଣା କରିଦିଆ ଗଲା । କର୍ମଚାରୀମାନେ ଖୋଜି ଖୋଜି ସବୁ ଭିଖାରିଙ୍କୁ ଧରି ଆଣିଲେ । ଯେଉଁମାନେ କାମଦାମ କରିବାକୁ ସକ୍ଷମ ଥିବାର ଦେଖାଗଲା, ସେମାନଙ୍କୁ କିଛି କାମ ଯୋଗାଇ ଦିଆଗଲା । ଯେଉଁମାନେ ଅକ୍ଷମ, ସେମାନଙ୍କୁ ଧର୍ମଶାଳାରେ ରଖାଇ ଖାଇବାକୁ ଦିଆଗଲା ।

କିନ୍ତୁ ଏହା ସତ୍ତ୍ୱେ କେହି କେହି ଭିଖାରି ଧର୍ମଶାଳାରୁ ଖସିଯାଇ ଭିକ ମାଗିବାର ଦେଖାଗଲା । ରାଜା ସେଉଠୁ ଘୋଷଣା କଲେ କି ଯିଏ ଭିକ ଦେବ, ତା'ର ଗୋଟାଏ ହାତ କାଟିଦିଆ ହେବ ।

ରାଜାଙ୍କର ଜଣେ ଭଉଣୀ ଥିଲେ । ତାଙ୍କ ପ୍ରକୃତି ବଡ଼ ଝୁର । ଦିନେ ସେ ତାଙ୍କ ମାମୁଁ ଘରକୁ ଯାଉଥାନ୍ତି । ବାଟରେ ଗୋଟାଏ ଓଟା ଭିତରେ ସେ ବିଶ୍ରାମ କଲେ । ସେତେବେଳକୁ ବେଳ ଦୁଇ ପହର ହେଲାଣି । ତାଙ୍କ ସାଙ୍ଗରେ ଥିବା ପରିଚାରିକାମାନଙ୍କୁ ଦୁଇ ଦୁଇଖଣ୍ଡି ପାଉଁରୁଟି ଖାଇବାକୁ ଦିଆଗଲା ।

ଜଣେ ପରିଚାରିକା ରୁଟି ଧରି ପାଖରେ ଥିବା ସରୋବର ପାଖରେ ବସି ଖାଇବି ବୋଲି ଯାଉଛି, ଗୋଟାଏ ଗଛ ମୂଳରେ ଜଣେ ଶୋଇଥିବାର ସେ ଦେଖିଲା । ବୁଢ଼ା ପାଖକୁ ଯାଇ ସେ ପଚାରିଲା, "କ'ଣ, ଦେହ ଖରାପ ହୋଇଛି କି ?"

ଆରବ୍ୟ ରଜନୀର କାହାଣୀ



"ଝିଅ ! ମୁଁ ଜଣେ ପଥିକ । ବହୁତ ଦୂର ସ୍ଥାନରୁ ଆସୁଛି । ତିନିଦିନ ତଳେ ନିର୍ଜନ ରାସ୍ତାରେ ଦସ୍ୟୁମାନେ ମୋ ପାଖରେ ଥିବା ସବୁ ଟଙ୍କାପଇସା ଲୁଟି ନେଲେ । ତିନିଦିନ ଧରି କିଛି ଖାଇ ନାହିଁ ।" ବୃଦ୍ଧ କୌଣସି ମତେ କହିଲେ ।

"ତେବେ ଆପଣ ଏ ପାଉଁରୁଟି ଦୁଇଖଣ୍ଡି ଖାଇ ନିଅନ୍ତୁ ।" ପରିଚାରିକା କହିଲା ।

ଅଳ୍ପ ଦୂରରୁ ରାଜାଙ୍କ ଭଉଣୀ ଦେଖି ପାରିଲେ କି ତାଙ୍କର ସେ ପରିଚାରିକା ଜଣକୁ ରୋଟି ଦେବାକୁ ଉଦ୍ୟତ ହେଉଛି । ସେ ସଙ୍ଗେ ସଙ୍ଗେ ତାକୁ ଡକାଇଲେ ଓ କଠୋର କଣ୍ଠରେ କହିଲେ, "ଭିକ୍ଷ ଦେବା ନିଷେଧ ବୋଲି ଜାଣିନାହିଁ ?"

"ରାଜକୁମାରୀ ! ଜାଣେ । ଅନେକ ଅଳସୁଆ ଓ ଠକ ଲୋକେ ଭିକ୍ଷାବୃତ୍ତି କରନ୍ତି ବୋଲି ରାଜା ତାହା ବନ୍ଦ କରିବା ସକାଶେ ବ୍ୟବସ୍ଥା କରିଛନ୍ତି । କିନ୍ତୁ ଏ ବୃଦ୍ଧ ଭିଖାରି ନୁହନ୍ତି ; ସେ ଜଣେ ପଥିକ । ଦସ୍ୟୁମାନଙ୍କ ହାତରେ ସର୍ବସ୍ୱ ଯାଇଛି । ତାଙ୍କ ପ୍ରାଣରକ୍ଷା କରିବା ନିମନ୍ତେ ମୁଁ ରୋଟି ଦେଉଛି ।" ପରିଚାରିକା ନମ୍ର ଭାବରେ ଜଣାଇଲା ।

"ଭିକ୍ଷ ଯିଏ ଦେବ, ତା'ର ଦଣ୍ଡ କ'ଣ ଜାଣିଛ ତ ?" ରାଜାଙ୍କ ଭଉଣୀ ଆହୁରି କଠୋର କଣ୍ଠରେ ପଚାରିଲେ ।

"ଜାଣେ, କିନ୍ତୁ ଏହା ଭିକ୍ଷ ଦେବା ନୁହେଁ, ଜଣଙ୍କ ପ୍ରାଣ ରକ୍ଷା କରିବା ।" ଏହା କହି ପରିଚାରିକା ଯାଇ ବୃଦ୍ଧଙ୍କୁ ରୋଟି ଖୁଆଇଲେ ।

ରାଜାଙ୍କ ଭଉଣୀ ଏତେ ରାଗିଗଲେ ଯେ ଆଉ ମାମୁଁ ଘରକୁ ନଯାଇ ପ୍ରାସାଦକୁ ଲେଉଟି ଆସିଲେ ଓ ଭାଇ ପାଖରେ ସେ ପରିଚାରିକା ନାମରେ ଫେରାଦ ହେଲେ । "ମୋ ଆଖି ଆଗରେ, ମୁଁ ବାରଣ କରିବା ସତ୍ତ୍ୱେ ଯିଏ ଆଇନ୍ ଭାଙ୍ଗି ପାରେ, ସେ ଝିଅ କେଡ଼େ ଦୁଷ୍ଟ ବୁଝି ପାରୁଥିବ !" ସେ କହିଲେ ।

"ତା'ର ହାତଟିଏ କଟା ହେବ !" ଏହା କହି ରାଜା ପରିଚାରିକାକୁ ତାଙ୍କ ଆଦେଶ ଶୁଣାଇ ଦେଲେ ଓ ସିପାହୀମାନଙ୍କୁ ସେ ଦଣ୍ଡ କାର୍ଯ୍ୟକାରୀ କରିବାକୁ କହିଲେ ।

ସିପାହୀମାନେ ପରିଚାରିକାକୁ ଧରିନେଇ ଯାଉଛନ୍ତି, ହଠାତ୍ ରାଜାଙ୍କ ଆଖି ତା' ଉପରେ ପଡ଼ିଗଲା । ସେ ଦେଖିଲେ, ତରୁଣୀଟି ଖାଲି ଅସାମାନ୍ୟ ସୁନ୍ଦରୀ ନୁହେଁ, ତା' ମୁଖମଣ୍ଡଳରେ ପ୍ରଶାନ୍ତି ଓ ମହାନୁଭବତାର ଲକ୍ଷଣ ସୁସ୍ପଷ୍ଟ ।

କିନ୍ତୁ ସଙ୍ଗେ ସଙ୍ଗେ ନିଜ ଆଦେଶ ସେ ପ୍ରତ୍ୟାହାର କରିବେ କିପରି ? ଚୁପ୍ ରହିଗଲେ ।

ରାଜାଙ୍କ ମନରେ ଶାନ୍ତି ରହିଲା ନାହିଁ । ଘଣ୍ଟାକ ପରେ ସେ ତାଙ୍କ ଭଉଣୀ ସହ ଯାଇଥିବା ଅନ୍ୟ ପରିଚାରିକାମାନଙ୍କୁ ଡକାଇ ପୂରା ଘଟଣାଟି ବୁଝିଲେ । ତାଙ୍କ ମନରେ ଭୀଷଣ ଅନୁତାପ ଆସିଲା ।



ସେ ରାତିରେ ଶୋଇ ପାରିଲେ ନାହିଁ । ସକାଳେ ଉଠି ବୁଝିବା ବେଳକୁ ପରିଚାରିକାର ହାତ କଟା ସରିଛି । ସେ ସଙ୍ଗେ ସଙ୍ଗେ ତା' ଚିକିତ୍ସାର ବ୍ୟବସ୍ଥା କଲେ ଓ ସେ ସୁସ୍ଥ ହେବା ମାତ୍ରେ ତାକୁ ବିଭା ହେଲେ ।

ପରିଚାରିକାଟିଏ—ସେଥିରେ ପୁଣି ତା'ର ଗୋଟାଏ ହାତ ନାହିଁ—ସେ ହେବ ରାଣୀ ! ବୃଦ୍ଧା ରାଜମାତାଙ୍କୁ ଏହା ମୋଟେ ଭଲ ଲାଗିଲା ନାହିଁ । କିନ୍ତୁ ସେ କିଛି କରିପାରିଲେ ନାହିଁ । ରାଜାଙ୍କ ଭଉଣୀ ଖାଲି ରକ୍ତଗୁଞ୍ଜିଲ ଗୋଟିବାଇଲେ । ଯାହାକୁ ସେ ଦଣ୍ଡ ଦିଆଇଥିଲେ, ସେ ହେଲା ରାଣୀ !

କିନ୍ତୁ ରାଣୀ ସମସ୍ତଙ୍କ ପ୍ରତି ସଦୟ ବ୍ୟବହାର କଲେ । ରାଜାଙ୍କ ଭଉଣୀ ବିରୁଦ୍ଧରେ ତାଙ୍କ ମନରେ ତିଳେ ବି କ୍ଷୋଭ ଥିବାର ଜଣାଗଲା ନାହିଁ ।

ରାଣୀଙ୍କର ପୁତ୍ର ସନ୍ତାନଟିଏ ହେଲା । ସେତିକିବେଳେ ରାଜାଙ୍କୁ କୌଣସି ଜରୁରୀ କାମରେ ବିଦେଶ ଯିବାକୁ ପଡ଼ିଲା । ସୁଯୋଗ ପାଇ ରାଜାଙ୍କ ଭଉଣୀ ରାଜମାତାଙ୍କୁ କହିଲେ କି ରାଣୀ ମନ୍ତ୍ର ଦ୍ୱାରା ରାଜାଙ୍କୁ ବଶ କରିଛି । ନହେଲେ ତାକୁ ରାଜା କାହିଁକି ବିବାହ କରନ୍ତେ ? ଇଏକି ଭଲ ବିରାଟ ଦେଶରେ କ'ଣ ରାଜକନ୍ୟା ଅଭାବ ହୋଇଥିଲେ ?

ରାଜମାତା ଏଥିରେ ପ୍ରଭାବିତ ହୋଇଗଲେ । ରାତାରାତି ସେ ରାଣୀଙ୍କୁ କେତେଜଣ ଅନୁଚର ସାହାଯ୍ୟରେ ରାଜ୍ୟ ବାହାରେ ଗୋଟାଏ

ମରୁଭୂମି ଭିତରେ ଘର ଦେବାର ବ୍ୟବସ୍ଥା କଲେ ।

ରାଣୀ ଗୋଟିଏ ହାତରେ ପୁଅକୁ ଘଡ଼ରେ ଜାକିଧରି ମରୁଭୂମି ପାରି ହେବାର ଚେଷ୍ଟା କଲେ । ତାଙ୍କୁ ଭୀଷଣ ଶୋଷ ଲାଗୁଥାଏ । ଦୈବକୁ ସେ ଗୋଟିଏ ନଈ ଦେଖିଲେ । ପୁଅକୁ ସାବଧାନରେ ଧରି ପାଣି ପିଇବାକୁ ସେ ମୁହଁ ସୁଅ ପାଖକୁ ନେଇଛନ୍ତି, ପୁଅ ହାତରୁ ଖସି ପାଣିରେ ପଡ଼ିଗଲା ଓ ପ୍ରବଳ ସ୍ରୋତରେ ଭାସିଗଲା ।

"ହାୟ ମୋ କପାଳ !" କହି ରାଣୀ କାନ୍ଦି ଉଠିଲେ ।

ସେତେବେଳେ ଜହ୍ନ ରାତି । ହଠାତ୍ ସେ ଶୁଣିଲେ ଗୋଟିଏ ନରମ କଣ୍ଠସ୍ୱର : "ପୁଅକୁ ଖୋଜି ଦେବ ?"

"ହଁ, ନିଶ୍ଚୟ !" ରାଣୀ କହିଲେ ।

ସଙ୍ଗେ ସଙ୍ଗେ ଗୋଟିଏ ସୁକୁମାର ଦେବଶିଶୁ ଭଳି ମୂର୍ତ୍ତି ତାଙ୍କ ପୁଅକୁ ଆଣି ତାଙ୍କ କୋଳରେ ରଖିଦେଲା । ରାଣୀଙ୍କ ଆନନ୍ଦ କହିଲେ ନସରେ ।

"ତମର ସେ ଲୁପ୍ତ ହାତଟି ପୁଣି ଯୋଗାଇ ଦେବ ?" ପଚାରିଲା ଆଉ ଗୋଟିଏ କଣ୍ଠସ୍ୱର ।

"ଯଦି ଦଅନ୍ତ, ତେବେ ନିଶ୍ଚୟ ଭଲ ହୁଅନ୍ତା !" ରାଣୀ କହିଲେ ।

ସେ ଏତକ କହିସାରିଲା ବେଳକୁ ତାଙ୍କର ପୂର୍ବପରି ଦୁଇ ହାତ ହୋଇଯାଇଥାଏ । ସେ ଦେଖିଲେ ହାତ ବିଷୟରେ ଯିଏ କହିଲା ସିଏ ବି ପୂର୍ବ ଦେବଶିଶୁ ଭଳି ଆଉ ଗୋଟିଏ ।

"କିଏ ତମେମାନେ ?" ରାଣୀ ପଚାରିଲେ ।

"ଚିହ୍ନି ପାରୁନ ? ଆମେ ସେ ଦୁଇ ରୋଟି ! ଯେଉଁ ରୋଟି ଦୁଇଟି ତମେ ଜଣେ ପଥିକକୁ ଦେଇ ତାଙ୍କ ପ୍ରାଣରକ୍ଷା କରିଥିଲ ।"

ରାଣୀଙ୍କ ଆଖିରୁ ଆନନ୍ଦାଶ୍ରୁ ବହିଗଲା । ସେ ଦେବଶିଶୁ ଦୁଇଜଣ ପୁଣି କହିଲେ, "ତମେ ଏଇଠି ରହିଥାଅ । ରାଜା ଏଇବାଟେ ଫେରୁଛନ୍ତି । ଘେର ବେଳକୁ ତମକୁ ଦେଖି କେଡ଼େ ଆଶ୍ଚର୍ଯ୍ୟ ଓ ଆନନ୍ଦିତ ହେବେ !"



# ନିଷେଧାଜ୍ଞା

ଲାକ୍ଷା ଦେଶର ସୀମାନ୍ତରେ ଲବଣ୍ୟପୁରୀ ନାମକ ସହର ଥାଏ । ଥରେ ସେ ସହରରେ ଗୁଣ୍ଡା ଓ ଡାକୁମାନଙ୍କର ପ୍ରାଦୁର୍ଭାବ ଏତେ ବେଶୀ ହେଲା ଯେ ସନ୍ଧ୍ୟା ପରେ ସିଏ ରାସ୍ତାରେ ଯିବା ଆସିବା କଲା ତା' ଜୀବନ ବିପନ୍ନ ହେବାର ଆଶଙ୍କା ଦେଖା ଦେଲା ।

ନାଗରିକମାନେ ଏକଥା ଲବଣ୍ୟପୁରୀର ଶାସନାଧ୍ୟକ୍ଷଙ୍କୁ ଜଣାଇଲେ । ଶାସନାଧ୍ୟକ୍ଷ ସନ୍ଧ୍ୟା ପରେ କେହି ରାସ୍ତାଘାଟକୁ ବାହାରିବା ଉପରେ ନିଷେଧାଜ୍ଞା ଜାରି କଲେ ।

ଫଳରେ ସୂର୍ଯ୍ୟାସ୍ତ ପରେ ପରେ ନଗରୀର ରାସ୍ତାଘାଟ ଜନଶୂନ୍ୟ ହୋଇଗଲା । ବେପାର ବଣିଜ ମାନ୍ଦା ହୋଇଗଲା ।

ସେଉଠୁ କେତେଜଣ ବିଶିଷ୍ଟ ବଣିକ ଯାଇ ରାଜଧାନୀରେ ପହଞ୍ଚିଲେ ଓ ରାଜାଙ୍କୁ ସବୁ ଜଣାଇଲେ । ରାଜା ଲବଣ୍ୟପୁରୀର ଶାସନାଧ୍ୟକ୍ଷଙ୍କ ପାଖକୁ ଲେଖିଲେ, "ତମେ ନିଷେଧାଜ୍ଞା ଜାରି କରି ବଡ଼ ବିଜ୍ଞତାର ପରିଚୟ ଦେଇଛ । ତେବେ କଥା କ'ଣ କି, ସନ୍ଧ୍ୟା ପରେ ନିର୍ଭୟରେ ଓ ସ୍ୱଚ୍ଛନ୍ଦରେ ରାସ୍ତାଘାଟରେ ବିଚରଣ କରିବା ଜନସାଧାରଣଙ୍କ ମୌଳିକ ଅଧିକାରର ଅନ୍ତର୍ଭୁକ୍ତ । ତେଣୁ ନିଷେଧାଜ୍ଞା ସେମାନଙ୍କ ଉପରେ ଜାରି ନ କରି କେବଳ ଗୁଣ୍ଡା ଓ ଡାକୁଙ୍କ ଉପରେ ଜାରି କରାଯାଉ ।"

ଶାସନାଧ୍ୟକ୍ଷ ନିଜ ଭୁଲ ବୁଝିଲେ । ସେ ସଙ୍ଗେ ସଙ୍ଗେ ନିଜ ତତ୍ତ୍ୱାବଧାନରେ ଗୁଣ୍ଡା ଓ ଡାକୁ ଦମନ କରିବାରେ ଲାଗିଗଲେ ।



# ଫଟୋ-ପରିଚୟ-ପ୍ରତିଯୋଗିତା : ପୁରସ୍କାର ଟ. ୫୦

ପୁରସ୍କୃତ ପରିଚୟୋକ୍ତି ମେ ୧୯୮୪ ସଂଖ୍ୟାରେ ପ୍ରକାଶ ପାଇବ



Pramod Bhanushali



Smt. V. Rajamani

★ ଉଭୟ ଚିତ୍ର ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇ ଗୃର ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ★ ମାର୍ଚ୍ଚ ୧୦ ସୁଦ୍ଧା ପରିଚୟୋକ୍ତି ପହଞ୍ଚିବା ଦରକାର। ★ ସର୍ବାଧିକ ଉପଯୁକ୍ତ ବିବେଚିତ ପରିଚୟୋକ୍ତି ପାଇଁ ଟ. ୫୦-୦୦ ପୁରସ୍କାର ପଠାଯିବ। ★ ପରିଚୟୋକ୍ତି ସହ ପ୍ରେରକର ନାମ ଓ ଠିକଣା ପୋଷ୍ଟକାର୍ଡରେ ଲେଖା ହୋଇ ଚନ୍ଦାମାମା ଫଟୋ ପରିଚୟ ପ୍ରତିଯୋଗିତା, ମାଡ୍ରାସ-୬୦୦୦୨୬ ଠିକଣାରେ ଆସିବା ଆବଶ୍ୟକ।

## ଜାନୁଆରି ପ୍ରତିଯୋଗିତାର ଫଳ

ପ୍ରଥମ ଚିତ୍ର : ଟେଲିଫୋନ୍‌ରେ ଆଣିଛୁ ମୋର ନବବର୍ଷର ଶୁଭବାର୍ତ୍ତା !

ଦ୍ୱିତୀୟ ଚିତ୍ର : ଶପଥ କରୁଛି ନବବର୍ଷରେ ଶୁଣିବି ନାହିଁ ମୁଁ ଖରାପ କଥା !!

ପୁରସ୍କାର ବିଜୟିନୀ : ସାଗରିକା କର, ଭୁବନେଶ୍ୱର।

ବିଜୟିନୀଙ୍କୁ ଅଭିନନ୍ଦନ; ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ।

## ପ୍ରଶ୍ନମାଳାର ଉତ୍ତର

୧. ଦକ୍ଷିଣ-ପଶ୍ଚିମ କେଣ୍ଟୁକିରେ। ଏଠାରେ ଶହେ ମାଇଲ୍ ଦୀର୍ଘ ଭୂଗର୍ଭ ଗୁମ୍ଫା ଦେଖିବାକୁ ମିଳେ। ୨. ଗ୍ରୀନ୍‌ଲାଣ୍ଡ ତଥା ଉତ୍ତର ଓ ଦକ୍ଷିଣ ମେରୁ ଅଞ୍ଚଳରେ। ୩. ଦକ୍ଷିଣ ଆଫ୍ରିକାର ଥେଗ୍ଲା ଜଳପ୍ରପାତ। ଏହାର ଉଚ୍ଚତା ୨୮୧୦ ଫୁଟ। ୪. ଦକ୍ଷିଣ ଆମେରିକାରେ ଭୂମଧ୍ୟରେଖା ପାଖରେ ସ୍ଥିତ ଚିମ୍ବୋରାଜୋ ଆଗ୍ନେୟଗିରି। ୫. ଉଦୟପୁରଠୁଁ ୪୮ କି. ମି. ଦୂରବର୍ତ୍ତୀ ଜୈସୋମଣ୍ଡ ହ୍ରଦ।

Printed by B. V. REDDI at Prasad Process Private Ltd., and Published by B. VISWANATHA REDDI for CHANDAMAMA CHILDREN'S TRUST FUND (Prop. of Chandamama Publications) 188, Arcot Road, Madras-600 026 (India). Controlling Editor: NAGI REDDI.

Statement about ownership of
JAHNAMAMU (Oriya)
Rule 8 (Form VI),
Newspapers (Central) Rules, 1956

1. *Place of Publication*
'CHANDAMAMA BUILDINGS'
188, Arcot Road
Vadapalani, Madras-600 026.
2. *Periodicity of Publication*
MONTHLY
1st of each calendar month
3. *Printer's Name*
B.V. REDDI
*Nationality*
INDIAN
*Address*
Prasad Process Private Limited
188, Arcot Road, Vadapalani
Madras-600 026.
4. *Publisher's Name*
B. VISWANATHA REDDI
*Nationality*
INDIAN
*Address*
Chandamama Publications
188, Arcot Road, Vadapalani
Madras-600 026.
5. *Editor's Name*
B. NAGI REDDI
*Nationality*
INDIAN
*Address*
Chandamama Buildings
188, Arcot Road, Vadapalani
Madras-600 026.
6. *Name & Address of individuals who own the paper*
'CHANDAMAMA CHILDREN'S TRUST FUND

Beneficieries:
1. B.V. NARESH
2. B.V.L. ARATHI
3. B.L. NIRUPAMA
4. B.V. SANJAY
5. B.V. SHARATH
6. B.N. RAJESH
7. B. ARCHANA
8. B.N.V. VISHNU PRASAD
9. B.L. ARADHANA
10. B. NAGI REDDI (JR)

All Minors, by Trustee:
M. UTTAMA REDDI, 14, V.O.C. Street,
Madras-600 024.

I.B. Viswanatha Reddi, hereby declare that the particulars given above are true to the best of my knowledge and belief.

B. VISWANATHA REDDI
*Signature of the Publisher*
*1st March 1984*

# ମାଲ୍‌ଟୋଭା ଦଳ –
# ସବୁବେଳେ ଧୁମଧାମ, କଣ ଯେ କରିବେ କିଏ ଜାଣେ

ଅଫୁରନ୍ତ ପ୍ରାଣଶକ୍ତିରେ ସବୁବେଳେ ଭରପୁର । ମଉଜ ମଜଲିସ, ଖେଳକୁଦରେ ପ୍ରାଣଖୋଲି ମିଶିଯାନ୍ତି । ତେଣୁ ପିଲାମାନଙ୍କର ଦରକାର ମାଲଟୋଭା । ସ୍ୱାଭାବିକ ଭାବେ ପାଚିଥିବା ଗହମ, ବାର୍ଲି, ଖାଣ୍ଟି ଦୁଧ, ପୁଷ୍ଟିକର କୋକୋ ଓ ଚିନିର ଶ୍ରେଷ୍ଠ ଗୁଣ ସବୁ ଏଥିରେ ମିଶିକରି ରହିଛି । ଦୁଧରେ ମିଶାଇଲେ ଏହା ଏକ ସୁସ୍ୱାଦୁ ପାନୀୟ ହୁଏ.....ପିଲାମାନଙ୍କର ଏହା ଏତେ ଉପକାର କରେ ଯେ ତାର କିଛି ପାରିବାର ନାହିଁ । ତେଣୁ ସାଙ୍ଗେ ସାଙ୍ଗେ ପିଲାଙ୍କୁ ଦେବାକୁ ଆରମ୍ଭ କରନ୍ତୁ ମାଲଟୋଭା ।



**ସ୍ୱାଭାବିକ ଭାବେ ପାଚିଥିବା ଗହମ ଓ ବାର୍ଲିର ମଲ୍ଟ**

ପଂଜାବରୁ ଆସେ ଗହମ ଓ ବାର୍ଲି ଓ ତାହା ପୁଷ୍ଟିକର ମଲ୍ଟ ଭାବେ ତିଆରି କରାଯାଏ ମାଲଟୋଭା ପ୍ଲାଣ୍ଟରେ । ଅତ୍ୟାବଶ୍ୟକ ଖଣିଜସାର ଓ ଭିଟାମିନ 'B' ରେ ପରିପୂର୍ଣ୍ଣ ମାଲଟୋଭା ହେଉଛି ପୂର୍ବରୁ ସୁପାଚ୍ୟ-ଖାଦ୍ୟ ଓ ଏହା ସହଜରେ ଶରୀରରେ ମିଶିଯାଏ ।



**ବିଶୁଦ୍ଧ ଘନ ଦୁଗ୍ଧ**

ମାଲଟୋଭାରେ ଯେଉଁ ଦୁଗ୍ଧାଂଶ ଅଛି ତା ଆସେ ଆମର ନିଜର ଦୁଗ୍ଧ ସଂଗ୍ରହ କେନ୍ଦ୍ରମାନଙ୍କରୁ ।
୧୦୦% ବିଶୁଦ୍ଧ, ୧୦୦% ପୁଷ୍ଟିକର ।

**ରୁଚିକର କୋକୋ ସ୍ୱାଦ**

ଆମେ ବ୍ୟବହାର କରୁ ବିଦେଶରୁ ଆମଦାନି ଉତ୍କୃଷ୍ଟ କୋକୋ — ତାର କାରଣ ଆମେ ଚାହୁଁ ଆପଣ ଉତ୍ତମ ସ୍ୱାଦ ପାନ୍ତୁ ଓ ଆପଣଙ୍କୁ ପୁଷ୍ଟିକର ଗୁଣ ମିଳୁ । କୋକୋ ଦ୍ରୁତଶକ୍ତି ଫେରାଇଆଣେ ଓ କ୍ଲାନ୍ତି ମେଣ୍ଟାଇବା'ରେ ସାହାଯ୍ୟ କରେ ।

**ଶକ୍ତିବର୍ଦ୍ଧକ ଚିନି**

ବିଶୁଦ୍ଧ ଧଳା ଚିନି ହେଉଛି ଚିନି ଭିତରେ ଶ୍ରେଷ୍ଠ ଚିନି। ପିଲାମାନଙ୍କର ଆବଶ୍ୟକ ହେଉଥିବା ଅତିରିକ୍ତ ଶକ୍ତି ପାଇଁ ଏହା ଅତି ପ୍ରୟୋଜନ ।

**ବିଶେଷଭାବେ ଭିଟାମିନରେ ସମୃଦ୍ଧ**

ମାଲଟୋଭା ହେଉଛି ପ୍ରୋଟିନ, କାର୍ବୋହାଇଡ୍ରେଟ, ଭିଟାମିନ ଓ ଖଣିଜସାରର ଏକ ଅପୂର୍ବ ସମ୍ମିଶ୍ରଣ । ଅତିରିକ୍ତଭାବେ ଭିଟାମିନ A, ନିଆସିନ, ଭିଟାମିନ B1 ଓ ଭିଟାମିନ D2 ରେ ମଧ୍ୟ ଏହାକୁ ସମୃଦ୍ଧ କରାଯାଇଛି । ଏଥିରେ କୃତ୍ରିମ ସ୍ୱାଦ ନାହିଁ ।




ଜଗଜିତ ଇଣ୍ଡଷ୍ଟ୍ରୀଜ ଲିମିଟେଡ
୧୯୮୧ ଓ ୧୯୮୨ରେ ମୋଣ୍ଡେ (ୱାର୍ଲ୍ଡ) ସିଲେକସନ ସ୍ୱର୍ଣ୍ଣପଦକ ବିଜେତା

**ଭିଟାମିନରେ ଭରପୁର ମାଲ୍‌ଟୋଭା: ସ୍ୱାସ୍ଥ୍ୟ, ବଳ ଓ ଶକ୍ତିଦାୟକ**

## ...ଟେକିଆ
## ...ଭେଟ

★ **ମାହାଳିଆ ଜହ୍ନମାମୁଁ**

ପରିଶିଷ୍ଟ ଅଙ୍କ

★ **ସଞ୍ଚୟ ଟ ୬/-**

ବାର୍ଷିକ ମୂଲ୍ୟ ଉପରେ




## ...ର ଏହି ୧ କେଜି
## ...କ ସହିତ

...ସନ୍ତାନ'ର ନୂଆ ବର୍ଷକୁ ଜହ୍ନମାମୁଁ ଯୋଗେ ଅଧିକ ଆନନ୍ଦମୟ
...ବିଶେଷ ସର୍ଫ ୧ କେଜି ପ୍ୟାକ'ର ଉପର ଫ୍ଲାପ୍‌ରେ ଥିବା କୂପନଟିକୁ
...ଉନ୍ତୁ ଓ ଚନ୍ଦାମାମା ପବ୍ଲିକେଶନ୍‌ସକୁ ଡାକରେ ପଠେଇ ଦିଅନ୍ତୁ—ଆଉ
...ଣ ପ୍ରଥମ-ପ୍ରାପ୍ତ ୧,୦୦,୦୦୦ ପ୍ରବେଶିକା ମଧ୍ୟରୁ ଜଣେ ହୋଇଥିବେ
...ାପଣ ପାଇବେ ଜହ୍ନମାମୁଁ'ର ଗୋଟିଏ ମାହାଳିଆ ପରିଶିଷ୍ଟ ଅଙ୍କ !
...ଣି. ବାର୍ଷିକ ମୂଲ୍ୟ ଉପରେ ଆପଣ ସଞ୍ଚୟ କରିପାରିବେ ଟ. ୬/- ।
... ଆପଣ କୂପନ ସହିତ କେବଳ ଟ. ୧୮/- (ସାଧାରଣ ବାର୍ଷିକ
...ଟ. ୨୪/-)ର ପୋଷ୍ଟାଲ ଅର୍ଡରଟିଏ ପଠେଇ ଦିଅନ୍ତୁ ।

**...କରନ୍ତୁ ! ଏହି ସୁଯୋଗ କେବଳ ୧୫ ଏପ୍ରିଲ**
**... ପର୍ଯ୍ୟନ୍ତ ଖୋଲା ଅଛି ।**



ମୁଁ ବଡ଼ ହେଲେ ନା!
ଖାଲି କମିକ୍ସ ପଢ଼ିବି ଆଉ
ଖାଲି ବିସ୍କୁଟ ଖାଇବି...!






ପିଲାମାନଙ୍କର ପ୍ରିୟ ବିସ୍କୁଟ -
ପାର୍ଲେ ଗ୍ଲୁକୋ ସ୍ୱାଦ ମଧୁର
ଶକ୍ତିରେ ଭରପୂର






# ପାର୍ଲେ ଗ୍ଲୁକୋ

ଭାରତର ସବୁଠାରୁ ବେଶୀ ବିକ୍ରି ହେଉଥିବା ବିସ୍କୁଟ